ନୂତନ ସିଲବସ୍ ଅନୁସାରେ ଲି । ୬

# କାକଳୀ

ଲେଖକ


ଶ୍ରୀ ଗୋପାଳ ଚନ୍ଦ୍ର ମିଶ୍ର ଏମ୍. ଏ,

ଅଧ୍ୟାପକ ରେଭେନ୍ସା କଲେଜ, କଟକ


ନୂତନ ସଂସ୍କରଣ


ପ୍ରକାଶକ

ଶ୍ରୀ [illegible]

[illegible], କଟକ [illegible]

୧୯୪୯

ମୂଲ୍ୟ ୫ ୦ ୯

ଥ୦ ଅଣା ମାତ୍ର

(ଅତିରିକ୍ତ ନାହିଁ)

# ସୂଚୀପତ୍ର

| ବିଷୟ | ପୃଷ୍ଠା |
|---|---|
| ୨୧ । ସେତେବେଳେ ପଣ୍ଡିଜୀଙ୍କ ମନେ | ୪୦ |
| ୨୨ । ସେବା ଗ୍ରାମ ଓ ଶାନ୍ତି ନିକେତନ | ୪୨ |
| ୨୩ । ଭୂଠ ପଥର | ୪୩ |
| ୨୪ । ଖୁଦୀରାମ | ୪୪ |
| ୨୫ । ଦମାରଶାଳ | ୪୬ |
| ୨୬ । ଅଗନ ତୁଳସୀ | ୫୧ |
| ୨୭ । ଚିଲ୍କା ପୁଲିନେ ଗୋଟିଏ ସନ୍ଧି | ୫୩ |
| ୨୮ । ଶେଷ ଭିକ୍ଷା | ୫୬ |

# କାକଳୀ

## ଜୀବନ-ବ୍ରତ

ମୁଁ ଯେବେ ଜନମ ପାଇଛି ଧରାରେ
ଈଶ୍ୱର ଅସୀମ କରୁଣା ବଳେ
ମୁଁ କେବେ ତାହାଙ୍କ ନ ଲଭିବି ସେବା
ବିଶ୍ୱବାସୀଙ୍କର ବିପୁଳ ମେଳେ
ବଣ ପରବତେ ଫୁଲଟିଏ ଫୁଟି
ଗନ୍ଧ ଦେଇ ସେବା କରେ ସରାଗେ
ବଣ ପରବତ ମୃଦୁଳ ମରୁତ
ଜନହିତ ପାଇଁ ନିରତ ଜାଗେ
ପଳ ପଳ କରି ଆପଣାକୁ ଜାଳି
ଦୀପ ଯେବେ ନିତି ଆଲୋକ ଦିଏ
ଗହନ ତମିରେ ସରଳ ପ୍ରୟାସେ
ପର ସେବାପାଇଁ ଜଳାନ୍ତୁ ଥାଏ ।
ବସନ୍ତ ବିପିନେ ଦିନ ଦ'ପହରେ
ସୁଧାଗୀତ ଗାଇ କୋକିଳ କାହିଁ
ପଥ କ୍ଳାନ୍ତ ହରି ପଥିକ ପରାଣେ
ଅମୃତ ବରଷେ ପରାଣ ମୋହି
ଅସୀମ ଜଗତେ ସସୀମ ମୁଁ ଛାର
ତଥାପି ନିଜର ଶକତି ଢାଳି

ବିପୁଳ ପ୍ରେରଣା ଉଦ୍ଦୀପନା ବଳେ
ସେବା-ବହ୍ନି ହୃଦେ ହେଉଛି ଜାଳ
ସାରା ପ୍ରକୃତିରେ ଫୁଟି ଅଛି ସବୁ
ଏହି ସୂତ ସେବା ଆଦର୍ଶ ପ୍ରୀତି
ମୁଁ ତେବେ ମାନ୍ୟଙ୍କ ମଣିଷ ଜନମେ
ନ ଗାଇବି କିଷ୍ଣ ସେବାର ଗୀତ
ତରୁ ତାର ଧର୍ମ ରକ୍ଷା କରି ସେତେ
କ୍ଳାନ୍ତ ପଥିକରେ ଦିଅଇ ଛାୟା
ନଦୀ ଦିଏ ଜଳ ଲତା ଦିଏ ଫୁଲ
ସୂର୍ଯ୍ୟ ଦିଏ ମଧୁ ଆଲୋକ ମାୟା
ହୁଏଁ ମୁହିଁ କ୍ଷୁଦ୍ର ହୁଏଁ ମୁହିଁ ଦୀନ
ନ ଥାଉ ମୋହର ସମ୍ପତ୍ତି ଧନ
ଅଛି କିନ୍ତୁ ମୋର ସେ ବିପୁଳ ଧନ
ତରୁଣ ବୟସ ତରୁଣ ମନ
ସେବା ମୁଁ କରିବି ଦୀନ ଦରିଦ୍ରର
ଲୁହ ପୋଛିବି ଆଜି ନୟନୁ
ପାଦେ କଣ୍ଟା ଦଳ କଣ୍ଟା ଦେବି ତୋଳି
ଦୁଃଖୀ ବାଟୋଇର କ୍ଳାନ୍ତ ଚରଣୁ
ସନ୍ତୋଷୀ କଲ୍ୟାଣେ ଅଙ୍ଗ ଲୁହ ଦେଇ
ଦୁର୍ବଳର ହେବି ମୁଁ ସହଯୋଗୀ
ମଣିଷ ଜନମେ ମଣିଷ ସମାଜେ
ମଣିଷ ସେବାରେ ହେବି ମୁଁ ତ୍ୟାଗୀ
ଏ ମୋର ସଙ୍କଳ୍ପ ଏ ମୋର ପ୍ରତିଜ୍ଞା
ଏ ମୋର ପବିତ୍ର ଜୀବନ ବ୍ରତ

ଝଙ୍କାବାସୀ ପଦେ ପରାଣ ଆମୋଦେ
ଦେବି ମୁଁ ଅତୁଳ ସେବା ସମ୍ପଦ
ତରୁ ମୂଳେ ଯେବେ ଦିଏ ପାଣି ଢାଳି
ସେ ତରୁ କି କେବେ ଦିଅଇ ନାହିଁ
ମାଳାକାର ପ୍ରାଣେ ସ୍ନେହ ବନମଧ୍ୟେ
ଅପାର ମମତା ଫୁଲ ଫୁଟାଇ
ତେସନ ମୁଁ ଯା'ର ସ୍ନେହ ମମତାରେ
ବଢ଼ିଛି ଚିରଦିନ ମର ଜଗତେ
ତା ପାଇଁ କି କେବେ ଦେବ ନାହିଁ ମୋର
ପରାଣର ସେବା ଶକ୍ତି ମତେ ?
ଏ ଜଗତ ଯାର ସେବାର ମନ୍ଦିର
ଦୀନ ଦୁଃଖୀ ତହିଁ ଦେବତା ମୂର୍ତ୍ତି
ସେ ମନ୍ଦିରେ ମୁହିଁ ହୋଇବି ସୁଯୋଗ୍ୟ
ପୂଜାରୀ, ଏହି ମୋ ଜୀବନ ବ୍ରତ ।

---

# ଅଗଷ୍ଟ ପନ୍ଦର

ଭାରତର ଆଜ ମୁକ୍ତି ଦିବସ ପୁଣ୍ୟ ତାରିଖ ଆଜି
ଏଇ ଦିବସର ଅନ୍ତରାଳେ ଯେ ସ୍ମୃତି ରହିଛି ସାଜି
କେତେ ଶହୀଦର ଶୋଣିତ ଆର୍ଦ୍ର କରିଲା ଭାରତ ଭୂମି
କେତେ ଜୀବନର ମାନ ଅପମାନ ତାଦୃଶ ହୋଇଲା ଜମି
କିଏ ମଲା କିଏ ଖଞ୍ଜ ହୋଇଲା ପର
ଦେଶବତ୍ସଳ ବୀର ପୁରୁଷର ସମାଧି ହୋଇଲା କାର ।

ହିମାଳୟ ଶିର ଇଙ୍ଗୁଦୀ ତୀର ଗଙ୍ଗାନଦୀର ତଟେ
ଆର୍ଯ୍ୟ ଋଷିର କଳ୍ପନାରାଶି ତପୋବନମାଳେ ଛୁଟେ
ତପୋବନମାଳ କୁଟୀରର ତଳେ ସଂଯମ ପ୍ରାଣାୟାମ
ଭାରତ ଜୀବନ କରିଥିଲା ଯାହା ସଂଯତ ଅଭିରାମ
ଜୈନ ବୀରଙ୍କ ହିଂସାର ନିନ୍ଦା ଗାଳି
ବୁଦ୍ଧଦେବର ନିର୍ବାଣ ନବ ସଂଘ ଶ୍ରମଣ ସ୍ଥଳି ।
ଏହି ଭାରତର ଖେଳି ଯାଇଥିଲା ଆର୍ଯ୍ୟ ଜୀବନ ତେଜ
ଫାହିଏନ ତର ମାନ ନାହିଁ ଥିଲା ଏ ଦେଶର ବୀରଦାମ୍ଭ
ମଗଧର ପଥ ଉଲ୍ଲାସ ପାଏ ଅଶୋକ ଶାସନ ମନ୍ତ୍ରେ
ହୁନ ଶକ କେତେ ଚଢ଼ାଉ କଲେ ଯେ ଅଶୋକ ଶାସନ ତନ୍ତ୍ରେ
ଭାଇ ପୁଣି ଭାଇ ଗଳାରେ ଖଡ୍ଗ ଦେଇ
ଏ ଦେଶରେ ଦିନେ ଅରାଜକତା ଯେ ଲୋଡ଼ି ଆଣିଥିଲା ଭାଇ ।
ଏ ଦେଶରେ ପର ବାହାରିଲେ କେତେ ଶିଖି ମନାଇବ ଦଳ
ଜୟଚନ୍ଦ୍ରର ଭାଇ ପ୍ରୀତି ସେ ଯେ ନିଷ୍ଠୁର ବ୍ୟବହାର
ସାଗର ସେପାରୁ ଡାକି ଆଣିଥିଲେ ମହମ୍ମଦ ଘୋରିଗଣ
ପୃଥ୍ୱୀରାଜର ଜୀବନ ହରି ସେ ବୁକୁଣ୍ଠା ବୀର ପଣ
ପୃଥ୍ୱୀରାଜର ସ୍ମୃତି ଫାଟିଥିଲା ଦୁଃଖେ
ଭାରତର ପୁଅ କାଳିମା ବୋଳିଲ ଭାରତ ଜନନୀ ମୁଖେ ।
ପଠାଣ ସୁଲ୍ତ ପଣ୍ଡ ହୋଇଲା ମୋଗଲ ଯୁଦ୍ଧ ସାଜି
ଉମ୍ବରରେ ଚଢ଼ି ଭାରତ ରାଜ୍ୟ ଚଳାଇଥିଲେ ଯେ ବାଜୀ
ମମତାଜ ପ୍ରେମ, ଆକବରଙ୍କର ମହତ ପଣିଆ ମାତ
ପ୍ରତାପ ସିଂହର ବିଶ୍ୱବିଜୟୀ ଦୁର୍ଦ୍ଦମ ଲଢ଼ା ସ୍ମୃତି
ସନାତନ ଏଇ ହିନ୍ଦୁ ଧର୍ମର ବିନାଶ ସାଧିବା ପାଇଁ
ସମ୍ରାଟ କେହି ଜଜିଆ ବସାଏ ଅଲ୍ଲାହାର ଗୀତ ଗାଇ

ଜାଗଇ ଭାରତ ଶିବାଜୀ ଧମନୀ ଜାଗି
ଅତ୍ୟାଚାରିତ ଜୀବନୁ କଳୁଷ ଥରେ ଧୋଇ ଦେବାଲାଗି।
ମହାରାଷ୍ଟ୍ରର ମରହଟ୍ଟା ବୀରେ କପଟେ ଛୁଟିଲା କର
ବଙ୍ଗ ସାଗରେ ଇଂରେଜ ଭସାଏ ଧନ ସମ୍ପଦର ତରୀ
ଗୁଜରାଟ ଅଞ୍ଚା- ଇତ ପ୍ରିୟଜାତ ଭାରତ ବଜାରେ ପଶି
ଏ ଦେଶ ଅର୍ଥ ଲୁଟି କରିବାକୁ ଧରେ ହାତଆର ଅସି
ବ୍ୟବସାୟୀ କାର ସିଂହାସନରେ ବସି
ଗୋରାଜାତ ଭାଇ ଗଙ୍ଗା ଫସଲ ସେଦିନୁ ନେଲା ରେ ଶୋଷି ।
ସେଇ ଦିନୁ ଏର ଜାତର ମୁକ୍ତି ସମରେ କେତେ ଯେ ବୀର
ଆହୁତ ହୋଇଲେ ଜଳା ଉଠିଥିଲା ଜାଲିୟାନାର ଧାର
ଅପମାନ ହେଲା ଏ ଜାତି ଚିହ୍ନା ଇଂରେଜ ପଦତଳିଆ
ଏ ଜାତରେ ପୁଣି ଶିଖି ମନାଇର ଘଟିଗଲା କେତେ କଳିଆ
ସିପାହୀ ବିଦ୍ରୋହ ସତ୍ୟାଗ୍ରହର ପଥେ
ଭାରତ ଚାଲଇ ବାପୁଜୀ ପ୍ରାଣର ସୁଧା ନିର୍ଦ୍ଦେଶ ମତେ ।
ଅରିଷ୍ଟ ପ୍ରଚୁର ଅହିଂସା ପ୍ରସାର ପ୍ରାଣର ଶୁଦ୍ଧି ଡାକ
କାରାଗାର ଆଦ ଫାଶୀର ଦଣ୍ଡ ଅନଶନ ଅଭିଷେକ
କେତେ ଦିନର ସେ ମନେ ପଡେ ଆଜ ଲବଣ ଆନ୍ଦୋଳନ
ଉଣେଇଶ ବୟାଳିଶ ସଂକଳ୍ପ— କାରାର ନିମନ୍ତ୍ରଣ
ଶେଷେ ଆଜ ଏଇ ପନ୍ଦର ତାରିଖଟି
ଭାରତ ଭୂମିରୁ ଗୋରା ଶାସନର ଚକ୍ରାନ୍ତ ଯାଏ ହଟି
ପରାଧୀନତାର ଶବଟା ପରେ ଆଜ
ମୁକ୍ତିର ରବି ଉଦୟ ହଇଲେ ହସେ ଫାଲଗୁନୀ ସାଜ ।
କର ହେ ଅଭ୍ୟର୍ଥନା
ସ୍ୱାଧୀନ ଭାରତ ସ୍ୱାଧୀନ ଦେଶର ତରୁଣ ଆର୍ଯ୍ୟ ସେନା ।

---

# ପଲ୍ଲି ଗାଆଁଟି ମୋ ସୁନ୍ଦର

କୁଳୁକୁଳୁ କରି ବାଲି ଦେହ ପରେ
ମଲ୍ଲଗୁଣୀ ନଈ ବହଇ
ଗାଆଁଟି ମୋହର ସେହି ନଈ କୂଳେ
ସୁନା ଫସଲରେ ହସଇ
ପକ୍ଷୀ ଉଚ୍ଛୁଳାଏ କନ୍ଦର
ଗାଆଁଟି ମୋହର ସୁନ୍ଦର ।
ସେହି ଗାଁ ମାଟି ଏତୁଡ଼ି ଶାଳଟି
ସେହି ମାଟି ଶେଷ ଶ୍ମଶାନ
ନୀଳ ଆକାଶର ତଳେ କି ହାଲୁକା
ମିଠା ତାର ପାଣି ପବନ
ପାଣି ଢାଳନ୍ଧ ଏ ଇନ୍ଦର
ଗାଆଁଟି ମୋହର ସୁନ୍ଦର ।
ଝର ପାଣି ତାର ଡ଼କତ କାଢଇ
ଫଳ ତାର ରସ ଦନ୍ତର
ନୀଳ ଘାସପଦା ଶାଗୁଆ କିଆରି
ସପନଟି କବି ପ୍ରାଣର
ରଷି କାଉଁରିଆ ଚଦର
ଗାଆଁଟି ମୋହର ସୁନ୍ଦର ।
ବାରମାସ ଧରି ନୂଆ ନୂଆ କ୍ଷେତ
ଫୁଟି ଉଠେ ଗାଁ ଓଠରେ
ଫଗୁଣ ଫୁଟିଲେ ବଉଳ ପେଣ୍ଡାରେ
ମହୁ ଭରେ ଫୁଲ ଅଧରେ

ଫୁଟନ୍ତ କଳାଅର ମନ୍ଦାର
ଗାଆଁଟି ମୋହର ସୁନ୍ଦର ।
ଗାଆଁବାଡ଼ ତଳେ ବହୁଥିବା ନଈ
କୂଳ ନାଗେଶ୍ୱର ଗଛରେ
ବୁଲବୁଲ ବାଆ ଭରି ପାହାନ୍ତାରେ
ଭଅଁର ଚୁମଇ କଢ଼ରେ
ଦକ୍ଷିଣ ବାଆର ବୁନ୍ଦର
ଗାଆଁଟି ମୋହର ସୁନ୍ଦର ।
ମହୁଲ ବଣରେ ଆଷାଢ଼ ଦିବସେ
ଗାଉଥାଏ ବନ ମୟୂର
ବାଲି ତଳେ ତଳେ ମିଶି ମିଶି ଯାଏ
ଦୂର ବାହ୍ମୋଇର ପୟୂର
ଶିରୀଷ ଫୁଲ କି ସୁନ୍ଦର
ଗାଆଁଟି ମୋହର ସୁନ୍ଦର ।
ସାହଘର ଭାଙ୍ଗି ଏକଘର କଲେ
ମକଦମ ବୁଢ଼ା ବଣେଇ
ଝଡ଼ ବରଷାରେ ଦୁଆରେ ଦୁଆରେ
ପିଆଦା ଦିଅନ୍ତି ବସାଇ
ପଥର କି ତାଙ୍କ ଅନ୍ତର
ଗାଆଁଟି ମୋହର ସୁନ୍ଦର ।
ପ୍ରେତ ପାଣି ପିଇ କେଶାଲକଣ୍ଠି ପଢ଼ି
ଥିଲେଟି ହଦଆ ଡଆଢ଼
ରସୁଣର କଣ୍ଠି ମାଳ ପିନ୍ଧି ପରି
ଆଖଡ଼ା କରଇ ଛକଡ଼

କ ଳେଭ୍ର ସପନ ନନ୍ଦର
ଗାଆଁଟି ମୋହର ସୁନ୍ଦର ।
କଏ ସେ ମରିବ କଏ ସେ ଛୁଡ଼ିବ
କହୁଥିବ ବୁଢ଼ା ନାହାକ
ଅଧପଇସାର ଜଡ଼ା ତେଲ ପାଇଁ
ଗୋପୀ ସାଜର ଯେ ଦମାକ
ଝିଙ୍ଗାନାକ ଗାଁ ଇନ୍ଦର
ଗାଆଁଟି ମୋହର ସୁନ୍ଦର ।
ଲୁଲୁହା ଖୋଲରେ ଖାସି ମାଉଁସରେ
ବୁଢ଼ି ରହୁଥିବେ କରଣେ
ଚରଣ ଚୂଟିଆ ବାସୁକ ଗୋହଥ
କଳି କରେ ଭୁଞ୍ଜା କାରଣେ
କରେଁ କାଠପାଣି ମନ୍ତ୍ରର
ଗାଆଁଟି ମୋହର ସୁନ୍ଦର ।
ସେଠ ବକଲରେ କଏ ଧାଇଁଗଲା
କଲିକତା ଖୋଜି ପାଇଟି
ରୂପ ଉଜୁଡ଼ିଲା ଫୁଲ ଗଲା ଭାଜି
ମଶାଣି ହୋଇଲା ଗାଆଁଟି
ଲୁହ ହେଲା ଏକା ଅସର
ଗାଆଁଟି ମୋହର ସୁନ୍ଦର ।
ଯାହାହେଉ ପଛେ ସେହି ମୋର ଗାଆଁ
ଜନମିଥିଲି ମୁଁ ତା କୋଳେ
ବୁଲୁଛି ମୁଁ ତାର ଗିରି ବନମାଳେ
ଦୂର ଅମ୍ବତୋଟା ଗହଳେ

କଇଁ ଚିହ୍ନିଥାଏ ଚନ୍ଦର
ଗାଆଁଟି ମୋହର ସୁନ୍ଦର ।

ଥରେ ହେଲେ ତାର ପୂତ ପାଦ ତଳେ
ଦିଅନ୍ତ ମୋ ଶିର ନୁଆଁଇ
ତାର ପଦ ଧୂଳି ଦେବେ ବୋଲି ହୋଇ
ଦିଅନ୍ତ କି ଶିରେ ଛୁଆଁଇ
ସେହୁ ମୋର ମାଆ ଉଦାର
ଗାଆଁଟି ମୋହର ସୁନ୍ଦର ।

---

# ପଥଦୂର୍ବା

ସୁବିସ୍ତୃତ ରାଜପଥ—ସେ ପଥେ ମୁଁ ଘାସ;
ହୃଦେ ମୋର କେତେ ହ୍ରସ୍ୱ ଜୀବନ—ଉଚ୍ଛ୍ୱାସ;
କ୍ଷୁଦ୍ର ମୋର ତନୁ ଭରି ଉଠେ କି ମୂର୍ଚ୍ଛନା !
ଦୂର୍ବା ମୁହିଁ ସର୍ବହରାର ଅଦମ ବେଦନା—

ଅଭିମାନ ଅପମାନ ଘୃଣା ଲଜ୍ଜା ଭରେ
ଯୁଗେ ଯୁଗେ ଶୂନ୍ୟ ହାତେ ଉଭା ବିଶ୍ୱ ଦ୍ୱାରେ;
ବକ୍ଷେ ମୋର ଶିଶିରର ଯୁଗ୍ମ ଶ୍ୱେତ କଣା,
ଓଷ୍ଠେ କ୍ଷୀଣ ହାସ୍ୟରେଖା ବିପୁଳ ପ୍ରେରଣା ।

ଦେଖିଛି ମୁଁ ସୃଷ୍ଟି ନାମେ ସହାରର ଲୀଳା
ପ୍ରଗତି ପ୍ରକାଶେ ପୂର୍ଣ୍ଣ କ୍ଷୟର ଶୃଙ୍ଖଳା ;
ଜ୍ୟୋତ୍ସ୍ନାଧୌତ ନିଶା ଲଗ୍ନେ ଶିଶିର ସ୍ନାହାନେ
ଶୁଣିଛି ମୁଁ ଚକୋରର ଅଶ୍ରୁଗାଥା ବନେ;

ସେନାପତି କାହିଁ ତୂର୍ଯ୍ୟ ବଜାଇ ସଘନେ
ଚଳେ ଜୟ ଧ୍ୱଜା ଜଡ଼େ ଉଡ଼ାଇ ଗଗନେ ;
ଦେଖିଛୁ ମୁଁ ପ୍ରେମିକର ଆତ୍ମଦାନ ଗୀତ
ପୁଲକରି ଜନନୀର ଅପରନ୍ତ ପ୍ରୀତି;
ସବୁ ଦେଖେ ମୁହିଁ ଏହି ପଥ ଧାରେ ବସି,
ସୀମାହୀନ ସ୍ୱପନର ସ୍ରୋତେ ଭାସି ଭାସି ।

---

## ଧଉଳି ପାହାଡ଼ର ଉଦ୍‌ବୋଧନ

ଦେଖ ମୋ ନୀରସ ଜଟିଲ ବଦନ
ବିଷାଦ ମଳିନ ଶିଳାର ଛବି
ତୁମ କବି ପ୍ରାଣ ଉଠୁଛି ସ୍ମରି
ମହା ଦୁଃଖେ କାହିଁ ପଡ଼ିଲା ଦ୍ରବି ?
ସତ୍ତ୍ୱରିଛ ଯୋଉ ଅବସାଦ ଶରେ
ଧଉଳି ପାହାଡ଼ ଟେକ ଦେ ଶିର
କହ କାହିଁଗଲେ ଅଶୋକ ରାଜନ
କାହିଁ ଗଲେ ତବ କଳିଙ୍ଗ ବୀର ।
କି କଥା କହିବି ଆହେ ଭୋଳା କବି
ଫାଟି ଯାଉଛି ମୋ ପାଷାଣ ଛାତି
ଦେଖି ସେ କଳିଙ୍ଗ ଅଙ୍ଗ ଭଗ ଭଗ
ଦେଖି ଏ ଦୁର୍ଦ୍ଦିନ କରାଳ ରାତି ।
କିବା ପ୍ରୟୋଜନ ଅଛି କି କାରଣ
କହି ସେ ଅତୀତ ବିଭବ କଥା;
ଦେଖୁଛ ତ ତୁମେ କୋଣାର୍କ କୀରତି
ସବୁଟି ଶେଷେ ନୁଆଁଏ ମଥା ।

ଆସିଲେ ସେ ଦିନ ଅଶୋକ ରାଜନ
ଥରିଲା ସଘନେ କଳିଙ୍ଗ ଭୂମି
ମେଘାସନ ଶିଖୁ ମହେନ୍ଦ୍ର ଶଇଳ
କଂପିଲା ଉଠିଲେ ସ୍ୱଦେଶ ପ୍ରେମୀ ।
ଗରଜନ କରି ଚିଲିକା ଲହରୀ
ଦରିଆ ଗରଭେ ତୋଳିଲା ତାନ
ବୀରମଦେ ସବୁ ଶ୍ରୀଫଳ କାନନ
ଦେଲେ ପ୍ରତିଧ୍ୱନି ହୋଇ ପ୍ରସନ୍ନ ।
ମୂକ ଶଇଳ ମୁଁ ବିଷାଦ ଆକୁଳେ
ଦେଖି ସେ ସମର ଭୀଷଣ ଛାୟା
କାନ୍ଦି ଲୋଟିଥିଲି ମୁଁ ଅଶୋକ ଚରଣେ
କହି "ବନ୍ଦକର ରାଜା ଏ ମାୟା" ।
ଧୂମକେତୁ ସମ ଯେ ଚଣ୍ଡ ଅଶୋକ
ତାଂକୁ ଦେଲା ଶିକ୍ଷା ଏ ଯେଉଁ ଜାତି
କାହୁଁ ଗଲା ତାର ଅତୀତ ସଂଭାର
କାହୁଁ ତାର ଭାଗ୍ୟ ତପନ ଦ୍ୟୁତି ?
ଅଛି ମୁହିଁ ଆଜି ବନ୍ଧ ପଦତଳେ
ଦରିଆ ତରଳ କନକ ଧାରେ
ଶୋଭଇ ଚିଲିକା ଯେସ ଅଳଙ୍କିକା,
ଗର୍ବିତ ଭରେ ମହେନ୍ଦ୍ରମାଳେ ।
ଶୁଣ ତେବେ କବି ପଚାରିଲା ମାତା
କାହୁଁ ସେହି ଜାତି କାହୁଁ ସେ ବୀର ?
କାହିଁ ତାର ଶିଳ୍ପ କଳା ସୁମୋହନ
ଦ୍ୱୀପ ଦ୍ୱୀପାନ୍ତର ପଣ୍ୟ ବେଭାର ?

ନାହିଁ ନାହିଁ କବି କିଛି ନାହିଁ ଏବେ
ସେ ବୀର ଭୂମିର ଗୌରବ ଛବି
ଚିରଦିନ ଲାଗି ଯା ବୀର ଜୀବନ
ବ୍ୟାକୁଳେ ହତାଶେ ପତନ ଦ୍ରବ ।
ସୁଖ ପରେ ଦୁଃଖ ଦୁଃଖ ପରେ ସୁଖ
ବିଶ୍ୱବକ୍ଷେ ଶେଷେ ହସେ ଉପନ
ଭାଗ୍ୟଚକ୍ର ଆବର୍ତ୍ତନେ ସିନା କଷ୍ଟେ
ଲାଗିଛି ଉତ୍ଥାନ ପୁଣି ପତନ ।
କାନ୍ଦିଲେ କି ହେବ ଦୁଃଖ ଅବସାଦେ
ଅଶ୍ରୁ ଅନୁତାପ ସଲିଳେ ଭାସି
ଅତୀତ ଉଜ୍ଜ୍ୱଳ ଭବିଷ୍ୟତ ତୁଙ୍ଗ
ଉଠ ଏବେ ଟେକେ ଜଡ଼ତା ନାଶି ।
ଯେ କଳିଙ୍ଗ ରବି ବୁଡ଼ିଛି ଆକାଶେ
ଯେ ଧରମା ଦେଶ ବିଷାଦଭରେ
ଫେରିବ ସେ ରବି ଏ ରଳମା ଦେଶେ
ଉଠ ଉତ୍କଳୀୟ ଉଠ ହେ ଥରେ ।
ଖଣ୍ଡଗିରି ଖୋଲି ଖଣ୍ଡ କରି ଦେଖ
ଖଣ୍ଡ ଖଣ୍ଡ ବର ମୋହନ ଶିଳା
ଅଚେତ-ପାଷାଣ ସତେ କି ଘସାଣ
ଲେଖି କାରିଗର ଲକ୍ଷଣ ଲୀଳା ।
ରୁକ୍ଷ ଶିଳାପରେ କି ମନ୍ତ୍ର ଯୋଗରେ
ଫୁଟି ଫୁଟି ଉଠେ ପଦ୍ମପାଖୁଡ଼ା
ନାଚନାଗରୀ ସେ ବସି କି ବିଳାସେ
ଶରମେ ସଜାଏ କୁସୁମ ଜୁଡ଼ା ।

ଏହି ତ ମୋ ଦେଶ ରମ୍ୟ କାହାଣୀ
ଯୁଗ ଯୁଗ ଭରି ଶବଦ ଢାଳେ
କୋଟି ଜନ ମନ କରି ଛନ ଛନ
ସ୍ୱଦେଶ-ପ୍ରୀତି-ପ୍ରଦୀପ ଜାଳେ ।
କଳା ସରୋବର-କମ୍ର-କୋକନଦ
ଜଗତ ଆନନ୍ଦ ଏ କୋଣାରକ
ତୁଙ୍ଗ ଲିଙ୍ଗରାଜ ଭୁବନ ବନ୍ଦିତ
ନୀଳ ନୀଳାଚଳ ପାପୀପାବକ ।
ସବୁଜ କି କବି ଉଜଳା ପାହାଡ଼
ଶୁକ ସମ ଗାଥା କରେ ଗାୟନ
ନୁହେଁ ନୁହେଁ ତାହା ଅତୀତଟି ଯାହା
ସେ କଥା ସ୍ମରଣେ ଜାଗେ ସ୍ପନ୍ଦନ ।
ପତିତ ଜାତିର ଅତୀତ ସମ୍ବଳ
ଭବିଷ୍ୟତ ସିନା ସାନ୍ତ୍ୱନାମୟ
ସେ ଦିନର ଯଶ ଆଜିର ସପନ
ଅବସାଦ-ମନ କରେ ତନ୍ମୟ ।
ମୋଗଲ ମହଲେ ଓଡ଼ିଆ ବାହିନୀ
ଚଳିଲେ ସେ ଦିନ ପତାକା ତୋଳି
ବିଜୟ ନଗର ବିଜିତ ହେଲା ଯା
ଗଉଡ଼ ଭୁବନ ଦେଲେ କି ଦଳି ।
ନିଜାମ ଭୁବନ ଭଙ୍ଗିଲା ପତନ
ଓଡ଼ିଆ ସେନାର ପଦ ସରଣେ
କଲବର୍ଗାର କରାଳ ଶତ୍ରୁ
କି ଲାଗି ସେ ଦିନ ଲୋଟିଲା ଶେଷେ ।

ଛଠ ଛଠ ଜାତି ବଂଶ ହେ ଅନେକ
ବାଣ୍ଟି ଖୁଲ ତବ ମହାପ୍ରସାଦ
ଦସ୍ତଭ ଧଅ ହେ ମ୍ଳେଚ୍ଛ ଫୁଲକ
ଭୁଲ ଭୁଲ ଶତ ବାଦ ବିବାଦ ।
ଏ ଭୂମିରେ ପଗ ନାଗଲେ ନାନକ
ଶଂକର ଚେତନା ଗଲେ ଶୁଣାଇ
ଚଇତନ୍ୟ ପଗ ଚେତନା ଲଭିଲେ
ନୀଳାଚଳ ପଥ ଧରଣ ପାଇ ।
ବୁଦ୍ଧ ଅସିଲେ ଏ ଦେଶେ ବାନ୍ଧିକ
ଜଉଗଡ଼ ତାର ଜବାବ ଦଏ
ଭକ୍ତର ଯେତେ ସ୍ରଷ୍ଟା ସାଧକ
ଏ ଦେଶେ ଆସିଲେ ସିଦ୍ଧି ପାଏ ।
ମୁକତ ପ୍ରଗଟ ତୀର୍ଥ ସମାନ
ଲହରୀ ଚପଳ ଚିଲିକା ତୀର
ଭନ୍ଦେ ମନେ ମନେ ରକ୍ତବାହୁ ସମ
ଅଧର ମହଣ ଏ ଦେଶେ ସ୍ଥିର ।
ଶତମୁଖ ହୋଇ ଇତିହାସ କହେ
କହେ ଗୌରବର ଗରିମା ନିଭ
ନୀଳାଚଳ ବେଲା ଘୋଷେ ନିରବଧି
ମହିମାରେ ନାହିଁ ଓଡ଼ିଆ ଜାତି ।
ମହାବୀର ଯେବେ ସତ୍ତ୍ଵ ଖେଳି ଦେବେ,
ଥାଏ ଚଉଦରେ ମାଟି ଗରବେ
ଶତବାର ତାର ଫୁଟିବା ପାଇଁକି
ଭାଇ ଅବସରେ ପୂରୁବ ଦମ୍ଭେ ।

ଚଣ୍ଡ କରେ ଯେବେ ଜଳେ ଶ୍ୟାମଧରା
ଆଶା କି ନ ଥାଏ ଆଷାଢ଼ ମୁଖ
ବରଷେ ଜଳଦ ବଦ୍ଧେ ମରୁଭୂମି
ଶ୍ୟାମମୟ ପୁଣି ଧରଣୀ ମୁଖ ।
ଏହୁ କି ଓଡ଼ିଆ ଶୁଣିବ ନାହିଁ ତେବେ
ଶୁଣିବ ନାହିଁ କି ସାଗରଯାତ୍ରୀ
ଜାଗେ କୋଣାରକ ଜାଗେ ମହୋଦଧି —
ଫୁଟି ଉଠେ ଉଷା-ନିମେଷ ସ୍ମୃତି ।
କି ହେଲା ମିଶର ଗ୍ରୀକ ଜୀବନ
ଆଥେନସ ସମ ଜନତା ଦେଶ
କି ହେଲା ଭାରତ କୀରତି ମହତ
ଗୁଣ କାହିଁ ଯାଇ ବହୁଛି ଦେଶ ।
ନିୟତ ନିୟମେ ଜୀବନ ଧୂଳିନେ
ଜୁଆର ଭଟ୍ଟା ଯେ ଘଟିବା ସତ
ନିୟତି ବୋଲି କି ଅବହେଳା କର
ପାଳିବ ଜୀବନେ ମଜନବ୍ରତ ।
ମୂକ ପାହାଡ଼ ମୁଁ ବଜଇ ଯୁଗରେ
ଭାଗବତ ଗାଥା ପଢ଼େ ମୋ ମନେ
ଯଦୁପତି ଯେବେ କହିଲେ ଅର୍ଜୁନେ
କରମ କେବଳ ଶ୍ରେୟ ଜୀବନେ ।
ତରୁଣ ତୁମେ ଯେ ଅରୁଣ ସମାନ
ଅନାଗତ ଯୁଗ ଆଶା ଭରସା
ତୁମର ସେବନେ ସାଧନେ ସପନେ
ତୁଟିବ ଅଚିରେ ଏ ଜାତି ଦଶା ।

ଦେଖ ଦେଖ ଏବେ କ ଆଶା ଆଦରେ
ଯଯାତି ଅନଙ୍ଗ ଧରମା ପ୍ରେତ
ଭୀମ ଶମଶାନୁ ଡାକନ୍ତି ଅଙ୍କୁଲେ
ଲକ୍ଷ ଅଜ ବୋଦ୍ଧ କି ଅଭିପ୍ରେତ ।
ହାହାକାର କରି ଗଙ୍ଗା ଗୋଦାବରୀ
ସୀମା ଭିତ୍ତି ଡାକେ ପୁରୁଷୋତ୍ତମ
ଆସ ରେ ସଜନ ଆସ ସଂବାଦ
ଭୁଲ ଅଭିଯାନ ବଜ୍ର ସମ ।
ଢୋଲା ହେବ ସର୍ କୋଣାରକ ପୁଣି
ଗଜପତି ଯିବେ ସମର କରି
ଫେରିବ ସେ ଦିନ ଫେରିବେ ସଜନ
ଫେରିବ ସାଧବ ମୁକୁତା ଧରି

\+ \+ \+ \+

ଅଛୁ ସେ ଧବଳ ପାହାଡ଼ ଅଦ୍ୟାପି
ଦାଇଆ ବକ୍ଷେ ତା ଶ୍ୟାମଳ କୋଳେ
ମାଲଗିରି ଶ୍ରେଣୀ-ମାଳ ମାର ବେଣୀ
ସହକାର ଶାଖା ସମୀରେ ଦୋଳେ ।
ସେ ଗିରି ଚରଣେ ଠିଆ ରହି ଯାତ୍ରୀ
ଉତ୍କଳ ଗୌରବ ପୁଲକ ଭରେ
ଧଉଳି ଯେ ନାଚ ମାରବେ ଡାକଇ
ବାଜେନ କ ତୁମ ସସ୍ୱଣ ଢଳେ ।

---

# ବାପୁଜୀ

ତୁମ ସତ୍ୟ ଅହିଂସା ସଙ୍କଳ୍ପ
ତୁମ ସତ୍ୟ ଅହିଂସା ଜୟାୟୁ
ନୂଆ କରି ବିଦ୍ରୋହୀ ଭାରତେ
ଗଢ଼ି ଦେଲ ସ୍ୱାଧୀନ ନିର୍ଭୟ । ୧ ।

ତୁମର ସେ ଶାନ୍ତ ସତ୍ୟାଗ୍ରହ
ତୁମର ସେ ସତ୍ୟ ଆନ୍ଦୋଳନ
ତୁମର ସେ ହରିଜନ ସେବା
ସତ୍ୟ ପାଇଁ ଦୀର୍ଘ ଅନଶନ । ୨ ।

ଆଜି ଗୁଞ୍ଜଇ ପୁର ପଲ୍ଲୀ ପୁରେ
ପ୍ରାଣପ୍ରିୟ ଆଦେଶ ତୁମ୍ଭର
ମନେ ପଡ଼େ ଗ୍ରାମ ସଙ୍ଗଠନେ
ଲଭୁଥିଲ ଯା ତୁମ୍ଭ ଆଦର । ୩ ।

ମଣିଷତ ଥିଲ ତୁମେ ସତ
ମଣିଷରୁ ହୋଇଲ ଦେବତା
ଦୁର୍ଦ୍ଦିନରେ ଚଢ଼ିଅଛୁ ଯେବେ
ଭାରତର ଶାଶ୍ୱତ ସଭ୍ୟତା । ୪ ।

ଆଜଠାରୁ ଶତେକ ବର୍ଷ ପରେ
ତୁମେ ପୁଣି ଆସିବ ଧରଣୀ
ଶରଦିନ ଭ୍ରାନ୍ତ ପଥିକରେ
ସ୍ନେହେ ଦେବ ଦେଖାଇ ସରଣୀ । ୫ ।

---

ଦେଖି ଏତେ ବଡ଼ ଗୌରବ ଭଗ୍ନ କାତର ଅପମାନ
ଶୈଳ ପାଷାଣ ବୁକୁ ଫାଟିଯାଏ, ଫାଟିଯାଏ କାୟା ପ୍ରାଣ ।
ଶୁଣ ଶୁଣ ଅହେ ଖୋର୍ଦ୍ଧା ପାଇକ ବଜ୍ରପୁ-ବଳପୁଷ୍ଟ ସିଂହ ଜାତି
ନିଅ ଏ ଶପଥ ଦନ୍ତେଣଇ ପଥ ଅଣୁ ପରମାଣୁ ଭୂଠୁ ହେ ଭାତି
ଅନୁଧ୍ୟାନ କର ଗଙ୍ଗବଂଶର ଉତ୍କଳ ଗଉରବ ।
ଜାଗ ହେ ଖୋର୍ଦ୍ଧା ପାଇକ ସିଂହ ଜାଗ ଧନ୍ଦ ଯୁଦ୍ଧ-ଜୀବ ।

---

## ଭକ୍ତଚରଣ

କୃଷ୍ଣ-ଭକ୍ତ ଶିରୋମଣି ହେ ଭକ୍ତଚରଣ,
'ମଥୁରାମଙ୍ଗଳ' ଗ୍ରନ୍ଥ କର୍ତ୍ତା ସୁନିପୁଣ,
ସରଳ ସାଧକ ଶ୍ରେଷ୍ଠ, ହେ ମହାପୁରୁଷ,
ଅମୃତ ବରଷି ତବ ଲେଖନୀ ସରସ—
ଉତ୍କଳର ଭକ୍ତ କବି ଲୋକ ସୁବିଦିତ,
ଉତ୍କଳର ଗୃହେ ଗୃହେ, ତୁମେ ପ୍ରତିଷ୍ଠିତ,
କୃଷକ କୁଟୀରେ, ପୁଣି ଧନୀର ପ୍ରାସାଦେ,
ତୁମର 'ମଥୁରା' ଗାଥା ଭରଇ ଆନନ୍ଦେ—
ତୁମ ହେଲୁ କେତେ ନେତା କେତେ ସୌଦାଗର
କେତେ ସୈନ୍ୟ ରଥୀ ଯୋଦ୍ଧା, ଶତ ସଂଗ୍ରାମର,
ଇତିହାସେ ଲଭିଲେଣି, କିନ୍ତୁ ଅହେ କବି
ତୁମର ତରଳ ଛନ୍ଦେ ପ୍ରାଣପାଏ ଦ୍ରବି—
କୃଷ୍ଣଭକ୍ତି ରସ ଗାନ ତୁମର କେବଳ
ଉତ୍କଳସାହିତ୍ୟ ମୁଖ କରଇ ଉଜ୍ଜ୍ୱଳ ।

---

# କଳିଙ୍ଗ କଳା

ଇନ୍ଦ୍ରଧନୁ ମନୋହର ରଙ୍ଗୀନ ବିଳାସ,
ବସନ୍ତର ନାଟଗୃହର କୋହିତ ପଲାଶ,
ଶ୍ରୃଦନର ପେଲବତା କୌମୁଦୀ ସୁଷମା,
ଶୁଭ୍ର ଚକ୍ରବାଳ ସୀମା ନିସର୍ଗ ନୀଳିମା—
ତୁମ ବୁକେ ଫୁଟିଅଛି ହେ କଳିଙ୍ଗ କଳା !
ତୁମେ ଅବା ଶିଳାରୂପେ ନପଷି ଫୁଲ ଦଳା,
ତୁମ ବୁକେ ଫୁଟିଅଛି ଅନନ୍ତ ବିଭବ,
ସନ୍ଧ୍ୟା ଅଧଫୁଟା ଗୋଲାପ ଗୋଲାପ ନିଗୌରବ ।
ନିର୍ଝରର ନିଦ୍ରାଭଙ୍ଗ କାଳୀନ ସ୍ପନ୍ଦନ,
ସୁରଭିତ ନନ୍ଦନର ଚର୍ଚ୍ଚିତ ଚନ୍ଦନ ।

*　　*　　*

ପୁଷ୍ପରସ ହାସ୍ୟ ବାସ ପ୍ରାଣ ଅନୁରାଗ,
ମାନବାତ୍ମା ଅନୁଭୂତ ହୁଏ କି ଜାଗ ?
ପ୍ରକୃତିର ଶୁଭ୍ରଲାସ୍ୟ ଲବଙ୍ଗ ଲଳିତ,
ନବ ମୃଗ ଧରନ୍ତିତ ଚକ୍ଷୁ ଭଙ୍ଗି ସ୍ଫୁରିତ,
ତୁମ ଦେହେ ହେ କଳିଙ୍ଗ, କଳା ସୁକୁମାର ?
ସୃଷ୍ଟି କିବା ରୂପ ଧାଏ—ବିଶ୍ୱ କଳ୍ପନାର ।
ତେଣୁ ଆଜ ମୁଗ୍ଧ ପ୍ରାଣେ କରେ ପ୍ରଣିପାତ,
ଶିଳା ଦେହେ ଦେଖି ବିଭୁ ଅନନ୍ତ ଇଙ୍ଗିତ ।
ମୁଗ୍ଧ ନର ମୁଗ୍ଧ ନାରୀ ସ୍ତମ୍ଭିତ ଜଗତ,
ସୃଷ୍ଟି ଗାଏ ତୁମ ପଦେ 'ସ୍ୱାଗତ ସ୍ୱାଗତ' ।
ବିଶ୍ୱଜନ ମନପ୍ରାଣ ଅଭିଭୂତ ଆଜ,
ଶିଳା ଅଙ୍ଗେ ଦେଖି ସ୍ଫୁଟେ କୋକନଦ ରାଜ ।

ହେ କଳଙ୍କ କାନ୍ତ କଳା, ହେ ଛବିଳ ଛଳା,
ତୁମେ କବା ବସନ୍ତର ଜାହ୍ନବୀ ଉଜ୍ଜଳା ?
ସୁକୁମାର ଅନୁଭୂତ ଉଲ୍ଲୋଳ ତରଙ୍ଗ,
ତୁମ ହୃଦ ବେଳାପଟର କରେ ଗତଭଙ୍ଗ ।
ତୁମେ ଅବା କାବ୍ୟ ଏକ ଉଦାର ଉଜ୍ଜ୍ୱଳ,
ମାନବର ସ୍ନେହ ପ୍ରୀତି ଜୀବନ୍ତ ସମ୍ବଳ ।
ଜୀବନର ମହାଭାବେ ଗଢ଼ି ଉପାଦାନେ,
ତୁମେ କବା,ଗଢ଼ା ସତ୍ୟ ସୃଜନ ସନ୍ଧାନେ ।
ତୁମେ କିବା ସତ୍ୟ ସୃଷ୍ଟି ପାଇଁ ଅଭିପ୍ରେତ,
ବକ୍ଷେ ଧରି କଳ୍ପନାର ଶାଣିତ ବିଦ୍ୟୁତ ।
ତେଣୁ ମୁହିଁ ତୁମଆଗେ କରେ ପ୍ରଣିପାତ,
ଦେଖି ତବ ଦେହେ ନବ ଲାବଣ୍ୟ ସମ୍ପାତ ।
କୃଷ୍ଣସାର ଅନୁସାରି ଶିକାରି ଆବେଗ,
ସହକାର ଶାଖାମାନେ ଯୁଗଳ ବିହଗ ।
ସଂଗ୍ରାମ-ଅଶ୍ୱର ରୋଷେ ଯେ କଦମ ଗମନ,
ସେନାପତି ଅଗ୍ରରଥ-ନିଶାଣ କମ୍ପନ ।
ବିଜୟୀର ହୃଦସ୍ପନ୍ଦା ଅସମ୍ଭାଳ ହସ,
ପରାଜିତ ପ୍ରାଣତଳ ଆକୁଳ ଉଚ୍ଛ୍ୱାସ ।
ଆଷାଢ଼ର କୃଷ୍ଣଘନ ଶ୍ୟାମଳ ସକାଳ,
ଶାରଦୀୟ ବନବଧୂ ଚନ୍ଦ୍ରିକା ଦୁକୂଳ—
ଦେଖିଛି ମୁଁ, ଦେଖିଛି ମୁଁ ତବ କାନ୍ତ ଦେହେ,
ଧଳାମଣ୍ଡୀ ଉଜ୍ଜଳର କଳା-କମ୍ରଶୋହେ ।

———

## କ୍ଷୁଦ୍ରର ଗୌରବ

ଜନନୀ ଦଅଇ ଯାହାଁ ସ୍ନେହର ଚୁମ୍ବନ,
ଶିଶୁର ଲପନନ ଭରି ଅମୃତ କଲ୍ୟାଣ ।
ବୃଦ୍ଧ ଯାହାଁ ଶିଶୁ ଶିରେ ହାତ ଦେଇ କହେ,
ହୁଅ ତୁମେ ବିଶ୍ୱଜୟୀ ଆୟୁଷ୍ମାନ ଅହେ !
କ୍ଷୁଦ୍ର ଦୁବ ତାର ଶିରେ ଦେବ ତେଜସ୍ୱାନ,
ତାଳଯାଏ ଶୁଭ୍ର ପୂତ ଆଲୋକ ମହାନ ।
ଚକୋରର କଣ୍ଠେ ପୁଣି ଆକାଶ ଚନ୍ଦ୍ରମା,
ଢାଳିଦିଏ ସୁଧା ତଲେ ନ ରଖି ଗାରିମା ।
କ୍ଷୁଦ୍ର ଯେତେ ତାର ପାଇଁ ଉଦାର ପୁରୁଷ,
ଯାନ୍ତେ ଅବିରତ ସିନା ନ ଦେଖି ପୌରୁଷ ।
କ୍ଷୁଦ୍ର ଯେତେ ବିସ୍ତୃତ ହୁଏ ଜଗତ ଜନର
ଆଶିଷ ଭାଜନ ନିତ୍ୟ, ଦାୟାଦ ଦାବୀର ।
ତା ପାଇଁ ସକଳେ ଯାନ୍ତି ଦିଅନ୍ତି ଲୋଡକ
କ୍ଷୁଦ୍ରପାଇଁ ଉଚ୍ଚ ହୁଏ ନିଖିଳ ଭୂଲୋକ ।

---

## ଅଶ୍ରୁର ଆହୁତି

ଏକଗ୍ରାମେ ଥିଲେ ଜଣେ ମହିଳା ବିଦୁଷୀ
ସକଳେ କରନ୍ତି ତାଙ୍କ ପ୍ରଶଂସା ଭୂୟସୀ
ତାଙ୍କର ବୟସ ହେବ ପ୍ରଚଳଣ ସେ ପାରେ
ମହିଳା ଥାଆନ୍ତି ଦୁଃଖେ ସ୍ୱଗୃହ ସଂସାରେ ।

ବିବାହ ଜୀବନ ହେବ ବହୁତ ବରଷ
ତଥାପି ନାରୀର ସୃଷ୍ଟି ସୌଭାଗ୍ୟ ସରସ
ବିଧାତା ଘଟାଇ ନାହିଁ ତାଙ୍କର ଜୀବନେ
ଦାମ୍ପତ୍ୟ ପ୍ରଣୟ ମଧୁ ମମତା ବନ୍ଧନେ
ଦାମ୍ପତ୍ୟର ନିଦର୍ଶନେ ଗୋଟିଏ ସନ୍ତାନ
ଯା'ଲାଗି ନାରୀର ଶତ ସୌଭାଗ୍ୟ ମଣ୍ଡନ
ଯା'ଲାଗି ସୃଷ୍ଟିରେ ବହେ ବାତ୍ସଲ୍ୟର ଧାରା
ଯା'ଲାଗି ବଢ଼ଇ ଜୀବନର ପରମ୍ପରା
ସେହି ସେ ସନ୍ତାନ ପାଇଁ ମହିଳାର ପ୍ରାଣ
ଦୀର୍ଘ ବର୍ଷ କରୁଥାଇ ଲୋତକ ବର୍ଷଣ
ଅନ୍ତରର କୋହ ପୁଣି ଉଠଇ ସତତ
ଶିଶୁଶୂନ୍ୟଗୃହ ଯେହ୍ନେ ଦୂର୍ବା ହୀନ ପଥ
ଗୋଟିଏ ସନ୍ତାନ ଖାଲି ଗୋଟିଏ ସନ୍ତାନ
ସେଇଥି ପାଇଁକି ତାଙ୍କ ହୃଦୟେ କ୍ରନ୍ଦନ ।
ସନ୍ତାନ ଅଭାବେ ଜାଗେ ନୟନରେ ପାଣି
କରୁଣ ମନ୍ଥନ ଶବ୍ଦେ ଉଠଇ ଉଜାଣି
ସଳିତା ବିହୀନ କିବା ପ୍ରଦୀପ ଜୀବନ
ସୁରଭି ବିହୀନ କିବା କୁସୁମ ଚନ୍ଦନ
ଦୂବାର ଛନ୍ଦନେ କିବା ମୂର୍ଚ୍ଛନାର ଅର୍ଥ
ସଲିଳ ବିହୁନେ ମେଘ ନୁହେଁ କି ଅସତ୍ୟ !
ସନ୍ତାନ ଅଭାବେ ସତେ ନାରୀର ଜୀବନ
ନୁହେଁ କିବା ହାହାକାର ଭରା ଅକାରଣ
ଫୁଲ ଫଳ ବିନୁ ଯେହ୍ନେ ବ୍ୟର୍ଥ ବନତରୁ
ଅପତ୍ୟ ଅଭାବେ ତେହ୍ନେ ନାରୀ ଜୀବନ-ମରୁ ।

କ୍ଷୟହୀନ ସର୍ଜ୍ଜନାର ପରମ୍ପରା ସୂତ୍ରେ
ଜନ୍ମ ମୃତ୍ୟୁ ଅଭିନୟ କୁହୁକର ମନ୍ତ୍ରେ
ଆତ୍ମ ସଂଘର୍ଷରେ ଜୀବ ଆତ୍ମସୃଷ୍ଟି ମାଗେ
ପ୍ରକୃତି ନିହିତ ସର୍ଜ୍ଜନାର ଅନୁରାଗେ ।
ସେହି ତୃଷା ସେହି କ୍ଷୁଧା ସେହି ପିପାସାରେ
ଅନ୍ତରର ନିମନ୍ତ୍ରଣ ଗୁପ୍ତ ଆକାଙ୍‌କ୍ଷାରେ
ମହୀଳା ଗୃହାନ୍ତେ ଏକ ନୟନ ସଙ୍ଗୀନି
ଯା ଲାଗି ଜୀବନ ବୀତି ନିତି ଭାଲି ଭାଲି ।
ମନେ ମନେ କଲେ ସେହୁ ସଂକଳ୍ପ କଠୋର
ସନ୍ତାନ ହୁଅନ୍ତା ଯେବେ ଜୀବନେ ତାଙ୍କର
ପ୍ରଥମ ସନ୍ତାନ ତେବେ ଦେବେ ସେ ଆହୁତି
ବିଧାତା ଚରଣେ—କୃତଜ୍ଞତାର ବିଭୂତି ।
ପ୍ରଥମ ସନ୍ତାନ ଗୋଟି ଦେବତା ଚରଣେ
ଦେବେ ସେ ଆହୁତି, ସତ୍ୟ, ନିବାର ଜୀବନେ,
ସେହିଧନ ବିଧାତାରେ କଲେ ସେ ଅର୍ଚ୍ଚନା
ଗୋଟିଏ ସନ୍ତାନ ଖାଲି ତାଙ୍କର କାମନା ।
କଲେ ଏ ସଂକଳ୍ପ ଦୃଢ଼, ବହୁ ବର୍ଷପରେ
ବିଧାତାର ଆଶୀର୍ବାଦେ, କରୁଣାର ଫଳେ
ଗୋଟିଏ ସନ୍ତାନ ଯେବେ ଉଜ୍ଜଳ କୁଟୀର
ଜନମ ହୋଇଲା, ନାଚେ ମହୀଳା ଅନ୍ତର ।
'କୋଳ ସଙ୍ଗୀନରେ ଗୃହିଁ ଜନନୀ ଆବେଗେ
କହନ୍ତି ମହୀଳା, ମଧୁ ବାତ୍ସଲ୍ୟ ସରାଗେ,
"ତୁ ଯେବେ ଅଛୁ ରେ ମୋର ସଙ୍ଗୀନରତନ
କୋଡ଼ା ନାହିଁ ଆଉ ତେବେ ସରଗ ଭୁବନ

ଲୋଡ଼ାନାହିଁ ମୋର ଭଲେ ସମ୍ମାନ ଗୌରବ
ନୟନ ସଙ୍ଗାଳି ତୁ ମୋ, ସ୍ୱର୍ଗୀୟ ବିଭବ ।
ତୁ ମୋର ଜୀବନ ଆଶା, ଜୀବନର ଧନ
ତୋ ଲାଗି ସାର୍ଥକ ହେଲା, ମୋ ନାରୀ ଜୀବନ
ଏହା କହି ପ୍ରାଣାବେଗେ ମହିଳା ରତନ
ଶିଶୁର ଲପନେ ଭରି ଗୋଟିଏ ଚୁମ୍ବନ
ଲଭନ୍ତି ଅପାର ସୁଖ ସନ୍ତୋଷ ପ୍ରତ୍ୟହ
ତାହାର ସନ୍ତାନପାଇଁ କି ସୁଧା ଆଗ୍ରହ
ପୂର୍ବର ପ୍ରତିଜ୍ଞା ଆଜି ସଂକଳ୍ପ କଠୋର
ମହିଳା ହୃଦୟେ ଆଣେ ମନ୍ଥନ ଗମ୍ଭୀର
ତାଙ୍କର ଜନନୀ ପ୍ରାଣେ ଅସୀମ୍ ଯନ୍ତ୍ରଣା
ଜଣାଇଲା ପୂର୍ବ ବ୍ରତ ବିଷମ ବେଦନା ।
ପ୍ରତିଜ୍ଞା ପାଳନେ ନାରୀ ଜୀବନ ସଫଳ
ପ୍ରତିଜ୍ଞା ପୂରଣେ ନାରୀ ନିରତ ଚଞ୍ଚଳ
ଯୁଗେ ଯୁଗେ ପରା ସେହୁ ତ୍ୟାଗ ହୁତାଶନ
ଜାଳି ଜଳାଇଛନ୍ତି ବିଶ୍ୱେ, ତ୍ୟାଗ ନିଦର୍ଶନ ।
କିଛି ନ ବିଚାରି ଆଜି, ପ୍ରଥମ ସନ୍ତାନେ
ଦେଲେ ସେ ଭସାଇ ଗଙ୍ଗାଯମୁନା ସଙ୍ଗମେ,
କୋଳର ସଙ୍ଗାଳି ଗୋଟି କଲେ ବିସର୍ଜ୍ଜନ
ସଂକଳ୍ପ ସନ୍ତାନଠାରୁ ଯେଣୁ ସୁମହାନ ।
ସେତେବେଳେ ପ୍ରାଚୀ କୋଳେ ସ୍ୱର୍ଣ୍ଣମୟୀ ଉଷା
ପିନ୍ଧି ରକ୍ତ ପଦ୍ମରାଗ ପାଟଳିମା-ଭୂଷା
ଅଶ୍ରୁ ଢାଳି କାନ୍ଦିଲା କି ଜନନୀର ଦୁଃଖେ
ଫୁଲ ବିକଶିତ ହେଲା ନାହିଁ ଗନ୍ଧ ସୁଖେ ।

ବନର ମୃଗିଣୀ କବା ନିଜ ଶିଶୁପାଇଁ
କାନ୍ଦୁଥାଏ ଅହରହ ଡୁହାଇ ଡୁହାଇ
ସ୍ୱଦ୍ୱଗମା କାନ୍ଦୁଥିଲା ମାଡ଼ ପଇହର
"କାହିଁ ଗଲୁ ସଙ୍ଗୀଳ ରେ, ଏକାକିମା କରି"
ସେଦିନ ଶର୍ବରୀ କୋଳେ ବ୍ୟଥିତା ଜନନୀ
କାନ୍ଦୁଥା, କାନ୍ଦୁତ ଯେତେ କାଟିଲ ଅବନୀ,
ଦେଖିଲେ ସପନ ଏକ ତାଙ୍କ ଶୂନ୍ୟକୋଳେ
କିଏ ଜଣେ ଯୋଗୀ ଆସି ଅଳ୍ପ ଅନ୍ତରାଳେ ।
...ହି, ସନ୍ତାପନା କର ଶିଶୁ ଦୁଇଗୋଟି
କହୁଛନ୍ତି, "ହେ ଜନନି, ବସ ଏବେ ଉଠି
ସନ୍ତାନରେ ଦିଅ ଦୁଗ୍ଧ, ତୁମ ସତ୍ୟବ୍ରତେ
ସନ୍ତୁଷ୍ଟ ମୁଁ ହୋଇଅଛି ଅମ୍ବହବି ସତେ ।"
ସେହିଦିନୁ ବର୍ଷବନ୍ଧୁ ଯାଇଅଛି ବିତ
ଅନେକ ସନ୍ତାନ-ମାତା ଏବେ ସେହି ସତୀ,
ତାଙ୍କ ଧୂର ମୁଖପଦ୍ମ କହୁ ଶିଶୁଦଳ
ସୁଶୀତଳ କରୁଥାନ୍ତି ନାରୀ ପ୍ରାଣତଳ
ଅଗାଧ ଅପତ୍ୟ ସ୍ନେହେ ମହିଳା ତଥାପି
ପ୍ରଥମ ସନ୍ତାନପାଇଁ ସର୍ବଦା ବିଳପି
କାନ୍ଦନ୍ତି ଫୁଟାଇ ବୁକୁ, ସନ୍ତାନର ମେଳେ,
ଭସାଇ ଦେଲି ମୁଁ ତାତେ କାହିଁ ଗଙ୍ଗା ଜଳେ"

---

# ଗତ୍ୟନ୍ତର

ନୟନେ ଭରିଛ ଏତେ ଅସରନ୍ତି ଲୁହ
ଅନ୍ତରେ ଭରିଛ ଖାଲି ବିଷାଦର କୋହ
ଦେଇଛ ବିଷାଦ ବ୍ୟଥା ଦାରୁଣ ବିପତ୍ତି
ଦେଇ ନାହିଁ ତଳେ ପ୍ରଭୁ ସହନ ଶକତି ।
ପଥେ ପଥେ ତୁମେ ଦିଅ କଣ୍ଟକ ବିଛାଇ
ନଇରାଶ୍ୟ ଦିଅ ଏ ଯେ ତୁହାଇ ତୁହାଇ
ଦିଅ ନାହିଁ କାହିଁ ତୁମେ ଅନ୍ତରରେ ବଳ
ଦିଅ ନାହିଁ ଝଡ଼ ଘୋର ଦୁର୍ଦ୍ଦିନେ ସମ୍ବଳ
ତୁମର ଏ ସତେ କିବା ବିହିତ ବିସ୍ତାର
ଜାଣି ଜାଣି ଶିରେ ଲଦି ଦିଅ ଗୁରୁଭାର
ନିରନ୍ତର ଏ ମୋ କୋହ ଆକୁଳ ଅନ୍ତର
ବୁଝି ବୁଝି ପ୍ରଭୁ ଆଜ ନାହିଁ ଗତ୍ୟନ୍ତର ।

---

# ଆତ୍ମଶକ୍ତି ପରିଚୟେ ଜାଗେ ଅଭିଳାଷ

ଆତ୍ମଶକ୍ତି ପରିଚୟେ ଜାଗେ ଅଭିଳାଷ,
ଆତ୍ମ-ଧୈର୍ଯ୍ୟ ଦିଅ ମୋତେ ବିଜୟ ବିଶ୍ୱାସ ।
ଆତ୍ମସତ୍ୟ ସ୍ୱତନ୍ତ୍ରତା ନିର୍ଭୀକତା ଆସ,
ଆତ୍ମଶକ୍ତି ପରିଚୟେ ଜାଗେ ଅଭିଳାଷ ।
ହେ ଚିରନ୍ତନ, ତୋତେ ମୋର ନିତ୍ୟ ଅନୁରୋଧ,
ନ ଆସୁ ସ୍ଖଳନ ପଥେ କେବେ ଗତିରୋଧ ।
ହେଉ ପୂର୍ଣ୍ଣ ଜୟଯାତ୍ରା ମଧୁର ବିକାଶ,
ଜୀବନ କାବ୍ୟର ଏଥୁ ବିହିତ ବିନ୍ୟାସ ।

ଆତ୍ମଶକ୍ତି ପରିଚୟେ ଜାଗେ ଅଭିଳାଷ,
ତାହେ ମୋତେ ଦିଅ, ତାତ ଉତ୍ତୁଙ୍ଗ ଆକାଶ ।

---

## ପାରିବ କି ?

ପିପାସା ଆକୁଳ ପରାଣେ ମୋହର
ଢାଳି ପାରିବ କି ଅମିୟ ଧାର
ଅନ୍ଧକାର ପଥେ ମାଝିବା କଣିଟେ
ଦେବ ଢାଳି ନବ ଜ୍ୟୋଛନାମାଳା ?
ମାନସ ଜୀବନେ ହୋଇ ପାରିବ କି
ଫୁଟାଇ ସରସ କମଳ ବନ
ବିକଶିତ କରି ସୁମନ କଳିକା
ପାରିବ କି ହରି ପରାଣ ମନ ?
ଆକୁଳିତ ପ୍ରାଣେ ପାରିବ ହସାଇ
ସଙ୍ଗେ ଲାବଣ୍ୟ ପସରା ଇନ୍ଦୁ
ଦଗ୍ଧ-ହୃଦ-ବନେ ପାରିବ ସିଞ୍ଚି
ଉପାର ଶୀକର ସଲିଳ ବିନ୍ଦୁ ?

---

## ମଧୁସ୍ମୃତି

ଉତ୍କଳର ଗୌରବ ହେ ମଧୁସୂଦନ
ଘେନ ଗୁରୁ, ଘେନ ମୋର ଏ ଅର୍ଘ୍ୟ ଚନ୍ଦନ
ପ୍ରଭାତର ହାସ୍ୟମୟୀ କନକ ଆଲୋକେ
ସ୍ମୃତି ପୂଜା ମନ୍ଦିରେ ଲୋ ଅଯୁତ ପୁଲକେ

ଧରିଛି ଏ ଜାତି ଆଜି ବନ୍ଦାଣ ଦୀପାଳି
ଯେ ପ୍ରଦୀପ ଗୁରୁ ତୁମେ ଦେଇଥିଲ ଜାଳି
ଧରିଛି ଏ ଜାତି ଆଜି ଗୋଲପ କୁସୁମ
ଯେ କୁସୁମ ସ୍ରଷ୍ଟା ତୁମେ, ଅହେ ପ୍ରିୟତମ
ଉତ୍କଳର ଗନ୍ଧ ଗନ୍ଧେ ଏ ମଞ୍ଜୁ ଲଗନେ
ମଧୁ ଅଛେ ଭରା ସ୍ମୃତି ଶୁଭ୍ର ପ୍ରାଣାଙ୍ଗନେ
ନାଚି ଉଠେ ରଶ୍ମି ତୋଳି ଯୁଗେ ଯୁଗେ ପରି
ସିନ୍ଧୁ ଧାଡେ ନାବିକରେ କରି ଅମୃତସରି
ହେ ବରେଣ୍ୟ ଗୁଣମୟ ଉତ୍କଳ ଗୌରବ
ଶକ୍ତି ଦିଅ ପୂର୍ଣ୍ଣ ହେବ ଜାତୀୟ ଉତ୍ସବ
ଶାନ୍ତ ହେବ ଉତ୍କଳର ଜାତୀୟ ପିପାସା
ଐକ୍ୟ ଫଳେ ପୂର୍ଣ୍ଣ ହେବ ଉତ୍କଳର ଆଶା

( ଦୁଇ )

ଦିଅ ତବ ଆଶୀର୍ବାଦ ତାଳ ସୁକଲ୍ୟାଣ
ଅହେ ପୂଜ୍ୟ ଭଗୀରଥ ଏ ଜାତି ବରଣ
ଆଜି ବନ୍ଧୁ ଏ ଉତ୍କଳୀ ଖଣ୍ଡ ବିଖଣ୍ଡିତ
ଅନାହାର ବନ୍ୟା ରୋଗେ ଏ ଜାତି ପୀଡ଼ିତ
ଯେ ପ୍ରେରଣା ଯେ ଉତ୍ସାହ ଅନୁଭବ ପ୍ରାଣେ
ଲଭିଥିଲ ଏ ଜାତିର ଅଭାବ ପୂରଣେ
ନୁହେ ପୂର୍ଣ୍ଣ ନୁହେ ପୂର୍ଣ୍ଣ ସେ ବିପୁଳ ଯଶ
ତେଣୁ ବନ୍ଧୁ ପ୍ରତିବର୍ଷ ମାଗୁ ହେ ଆଶିଷ
ମଧୁ ପ୍ରାଣ ଅନାବିଳ ପୂତମଧୁ ଧାର
କର ପାନ ତୃପ୍ତ ଶବ୍ଦେ ହେ ଉତ୍କଳୀ ସାର

କୋଣାରକ ଖଣ୍ଡଗିର ଆଗୋ ମହାନଦୀ
ଝୁରଅନା ବନ୍ଧୁ ତବ ସାକ୍ଷୀ ସତ୍ୟବାଦୀ
ଗୁହୁଁ ଗୁହିଁ ତାରେ ଅବା ଗୁହଁ ମୁଗଧ ପ୍ରାଣେ
ମଧୁ ତବ ସ୍ୱର୍ଗପୁରୁ ଗୁହେଁ ଅନୁକ୍ଷଣେ ।

---

## ବିଶ୍ୱ ଭିକ୍ଷୁକ ମାଲବୀୟଜୀ

ଜନ୍ମଭୂମି ଯୋଗ୍ୟପୁତ୍ର ପୂଜ୍ୟ ମାଲବୀୟ,
ତୁମ ପ୍ରାଣେ ପ୍ରତିଭାର ପୂର୍ଣ୍ଣ ସମନ୍ୱୟ,
ସଂସ୍କୃତିର ଅବା ତୁମେ ଜୀବନ୍ତ ପ୍ରତୀକ,
ତୁଙ୍ଗ ହିନ୍ଦୁ ଆଧ୍ୟାତ୍ମିକତାର ପ୍ରଚାରକ ।
ମହାତେଜା, ମହାଚେତା, ପଣ୍ଡିତ ପ୍ରବର,
ବିଶ୍ୱ ବିକାଶର ମୂର୍ତ୍ତି, ଜ୍ଞାନ ସୌଦାଗର,
ହେ ବଦାନ୍ୟ, ହେ ବରେଣ୍ୟ, ହେ ବିଶ୍ୱଭିକ୍ଷୁକ,
ଭିକ୍ଷୁ ସାଜି ଶୁଣିଥିଲ ଭିଖାରିର ଡାକ ।
ଭୁଲି ସାଂପ୍ରଦାୟିକତା କଳୁଷ କ ସତେ
ଗୁଲିଥିଲ ସୁବିପୁଳ ଜୀବନର ପଥେ !
ବନାରସେ ତୋଳି ହିନ୍ଦୁ ସଭ୍ୟତା ଶିଖର
ବେଦ ଗାନେ ମୁଖରିତ କରି ଗଙ୍ଗାତୀର,
ହେ ଦଧୀଚି ଅବତାର, ଋଷି ମହାମାୟ,
ଯୁଗେ ଯୁଗେ ସୃଷ୍ଟିତଳେ ତୁମେ ବନ୍ଦନୀୟ ।

---

# ସତ୍ୟାଗ୍ରହୀ

ଚିତ୍ତ ଯାର ମୁକ୍ତ ସଦା ପୁଷ୍ପପର ଶୁଦ୍ଧ ପ୍ରାଣ
ମୁଖେ ନିତ୍ୟ ମୁଖ୍ୟ ଯା'ର ସାମ୍ୟ ଶାନ୍ତି ମୈତ୍ରୀଗାନ
ନିଃସ୍ୱ ଲାଗି ନିଃସ୍ୱ ଯେହୁ ଦୁଃଖୀ ଲାଗି ଦୁଃଖ ସହେ
ଅନ୍ୟ ହୃଦେ ଜଳଦପରି ଭଗ୍ନ ପ୍ରାଣେ ବଜ୍ର ବହେ ।
ତାର ଗୀତ ଝଙ୍କ ଘୋଷେ ମୁଗାବେଶେ ମନ୍ଦ୍ର ତାଳେ
ସଳିତା ରୂପେ ଜଳଇ ଯେହୁ ଆପେ ମରି ରଶ୍ମି ଢାଳେ
ତାରି ଲାଗି ଶୂନ୍ୟେ ତାରା ଚନ୍ଦ୍ର, ରବି, ଗାଏ ଗୀତ
ଶରଦାକାଶେ ସ୍ୱଚ୍ଛ ରୂପେ ଫୁଟି ଉଠେ ତା ସ୍ୱଚ୍ଛଚିତ୍ତ ।
ସିନ୍ଧୁ ବାରି ଉଚ୍ଛଳେ ନାଚି ଚରଣେ ତାର ଅର୍ଘ୍ୟ ଢାଳେ
ସୃଷ୍ଟି ପଥେ କି ଅନୁରାଗେ ମଣିଷ ତାର ସ୍ତୁତି ପାଳେ ।
ସତ୍ୟାଗ୍ରହୀ ଜାଣେ ନା ସେହୁ ଜୀବନେ କିଛି ଭ୍ରାନ୍ତି ଭୟ
ଋଷି ସେବି ହୋଇଛନ୍ତି ଯେ ଯେ ବିଶ୍ୱତଳେ ବନ୍ଦନୀୟ ।
ଶତ୍ରୁ ଆଗେ ଶାନ୍ତମନେ ଥୁଏ ସେ ଠିଆ ସତ୍ୟ ଜ୍ଞାନେ
ସତ୍ୟ ପ୍ରତି ଆଦର ତାର ସତ୍ୟ ଲାଗି ମରି ସେ ଜାଣେ ।



# ବେଳା

ପଲ୍ଲୀ ପଥେ ଦେଖିଲି ମୁଁ ଥରେ
ଏକଦାନେ ଭୁଲ ମୁହୂର୍ତ୍ତିରେ
ଜୀର୍ଣ୍ଣ ଏକ ଚନକ କୁଟୀର
ଠିଆ ଅଛି ନଦୀ ଆର ପାରେ ।

ଭଙ୍ଗାଭୁଜା ମାଟି ରଣେଭଣ
ବାଲ ଢୁଙ୍କା ଉଚ୍ଚ ମଟ ମାଟି
ତହୁଁ ଏକ ସରଳ କୁଟୀର
ଜୀର୍ଣ୍ଣକାନ୍ତେ ଝୁଲୁଅଛି ଛାଟି ।
ପଲ୍ଲୀପଥେ ଦେଖିଲି ମୁଁ ଥରେ
ଏକ ଦନେ ଭ୍ରମ ମୁହୂର୍ତ୍ତରେ
ଜୀର୍ଣ୍ଣ ଏକ କନକ କୁଟୀର
ଚଉଦଗେ ବନ ବଲ ଭରେ ।
ନୂଆଣିଆ ଗୃହ ପରେ କାହୁଁ
ଲଉ ଡଙ୍କ ଖେଳୁଅଛି ଦୋଳ
ଥାନେ ଥାନେ କଖାରୁଭି ଫୁଲ
ହସେ ଯେହ୍ନେ ପବନରେ ଢଳ ।
ଜୀର୍ଣ୍ଣ ଏକ କନକ କୁଟୀର
ଜଣା ନାହିଁ ବୟସ ତାହାର
ବରଣ୍ଡାର ତଳେ ଲେଲେ କାହୁଁ
କୁହା କୁହ ଧାଉଁଣ ଅଗାର ।
ଯାଉଁ ଯାଉଁ ମୁହିଁ ମୋର ପଥ
ଗୃହୁଁ ଥାଏ ଉଦାସୀନ ମନେ
ଆହା ଏଠି କୁଟୀର ଗୋଟିଏ
ଦୃଷ୍ଟି କରେ ଆକର୍ଷଣ କ୍ଷଣେ ।
ନୁହେ ଏହା ପ୍ରାସାଦ ମହଲ
ନୁହେ ଏହା ମୁକୁଳା ଭଆସ
ନାହିଁ ଏଥି ରୂପ କୁମାରୀର
ଖ୍ୱାଜଜେମା ସପନ ବାଳାସ ।

ହଠାତ୍ ନାହିଁ କୁଟୀର ଅଭ୍ୟନ୍ତ
ସନ୍ଧ୍ୟା ବେଳେ ମୁଗ୍ଧ ଗାୟକର
ସ୍ବର୍ଣ୍ଣକଣ୍ଠ ମୋହନ ମୂର୍ଚ୍ଛନା
ଯେ ସମୟ ସଙ୍ଗୀତ ଲହର।
ଦୀର୍ଘଦିନ ସନ୍ତ୍ର ବିରହର
ବ୍ୟଥା ଭରା ସଯନ ବାହାଣୀ
ନାହିଁ ଏଥି, ସରଳ କୁଟୀର
ବସେ ଦୁଃଖୀ କେତେଗୋଟି ପରାଣୀ।
ଜୀର୍ଣ୍ଣ ଏକ ସରଳ କୁଟୀର
ଦେଖିଲି ମୁଁ ଯାଉଁ ଯାଉଁ ବାଟେ
ଏ ସମୟେ ଗାଉଥାଏ ଗୀତ
ନାଉରିଆ ନଦୀ ଅର ଘାଟେ,
ଜୀର୍ଣ୍ଣ ଏହି କୁଟୀରର ମାଝେ
ଜଳୁଥାଇ କେତେଗୋଟି ଜୀବନ
କରୁଥାଏ ନିତ୍ୟ ଶାନ୍ତି ଭୋଗ
ସୁମଧୁରେ ଦିବସ ଯାପନ।
ଦୁଃଖୀରଙ୍କି କେତେଗୋଟି ପରାଣୀ
ପଥ ପାର୍ଶ୍ବେ ଏ କୁଟୀର କୋଣେ
ଏ ସରଳ ସୁଖ ଅନାମୟ
କରୁଥିଲେ ଭୋଗ ମୁକ୍ତ ପ୍ରାଣେ।
ସମାଜର ଅନୁନ୍ନତ ଜାତି
ଗନ୍ଧମୂର୍ଖ, ନୁହେଁ ଜଣାଶୁଣା
କେଳା ବୋଲି ସବୁଠାରେ ହେୟ
ସବୁଠାରେ ତା ଆଦର ଊଣା।

ତଥାପି ବା ତାଙ୍କ ସଙ୍ଗେ ସୁଖୀ
ଅଛୁ କଏ ସାରା ଜଗତରେ
ପ୍ରକୃତିର ମୁକ୍ତ ଅଙ୍ଗନରେ
ପ୍ରକୃତିର ଘନ ବେଷ୍ଟନୀରେ,
ସେହି ମାଟି ସେହି ମଶାମାଛି
ତୁଙ୍କା ହୁଡ଼ ଅପନ୍ତରା ମାଝେ
ବସା ବାନ୍ଧି ପରିବାର ସହ
ରହିଅଛୁ ବେଳା କାଳେ କାଳେ ।

---

## ପ୍ରଜାପତି

ନିର୍ଝରଣୀ ତଟପାଟରେ ଭରା ପୁଷ୍ପବନେ;
ବଣ୍ଣୀ ଯହିଁ ଜଉ ରହେ ତରୁ ଅପଘନେ,
ଯହିଁ ପ୍ରାତେ ଫୁଟି ଗନ୍ଧ ପୁଷ୍ପ ନାନାମତେ,
ସନ୍ଧ୍ୟାଗମେ ଝଡ଼ ତଳେ ଶୁଅନ୍ତି ଏ ପଥେ,—
ସେହି ପୁଷ୍ପ ସେହି ଲତା ଅଟବୀ ଗହନେ,
ଉଡ଼ ବୁଲେ ପ୍ରଜାପତି ନିତି ଯେ ବହନେ,
ସେନ୍ତା ସେନ୍ତା ବାମ୍ରକଳ କୁସୁମ ସ୍ତବକ,
କଏ ଡାକେ ଆସ ବନ୍ଧୁ ସୁଷମା ଗ୍ରାହକ,
ପ୍ରକୃତିର ଡାକ ଶୁଣି ପ୍ରଜାପତି ତାହିଁ
ପୁଷ୍ପବନେ ମୁଗ୍ଧପ୍ରାଣେ ବୁଲେ ମଧୁ ପାଇଁ ।
ବହିଯାଏ ନିର୍ଝରଣୀ ଉପଲ ସେଚତେ,
ବନକୁଞ୍ଜ ଝେଦମାନେ ମର୍ମର ସଙ୍ଗୀତେ,

ଆର୍ଦ୍ର ହୁଏ ପଥଧୂଳି ଉପର ମୃତ୍ତକା,
ଉପବନେ ଫୁଟି ପଡ଼ି କୁସୁମ ବୀଥିକା,
ତଟପାଶେ ପୁଷ୍ପ ରେଣୁ ସୌରଭ ଭଣ୍ଡାର,
ବୃନ୍ତେ ବୃନ୍ତେ ଅନାଘ୍ରାତ ସୁଷମା ସମ୍ଭାର,
ନାହିଁ ବାଧା ପ୍ରତିବାଦ ନାହିଁ ପ୍ରତିଯୋଗ;
ନିର୍ଭୟେ ସେ ପ୍ରଜାପତି ତହିଁ ସୁଖେ ଭୋଗ,
ସ୍ୱାଧୀନ ସେ ପ୍ରଜାପତି ଶାନ୍ତ ନିରଳସ;
ପତଙ୍ଗ ହେଲେ କି ହେବ ସେ ଯେ ଆତ୍ମବଶ ।
ଭୋଗୀ ସେହୁ ମହାଭୋଗୀ ସନ୍ତୋଷସନ୍ତାନ,
ସୃଷ୍ଟିତଳେ ଭାଗ୍ୟବାନ ଉଦାର ମହାନ ।
କି ଦେଖ ସଂସାରେ ତୁମେ ହେ ଜ୍ଞାନୀମାନବ,
ଅଛି ଯଦି ଅଭିଜ୍ଞତା ବିବେକ ଗୌରବ,
ଜ୍ଞାନୀ ତୁମେ ଯୁକ୍ତିପ୍ରିୟ ଆହେ ତର୍କ ପ୍ରାଣ;
ସୃଷ୍ଟିହାଟେ ତୁମେ ଏ ଯେ ଶ୍ରେଷ୍ଠ ସଂସ୍କରଣ,
ପରୀକ୍ଷିଛ କେବେ କହ ଆତ୍ମ ସମ୍ବୋଧନେ,
ସୁଖୀ କିଏ ଶାନ୍ତ କିଏ ଏ ଧରାଭୁବନେ ?
ହେ ମାନବ, ଜ୍ଞାନଗର୍ବେ ପ୍ରଜାପତି ସମ
ହୋଇ କି ପାରିଛ କେବେ କାନ୍ତ ମନୋରମ ?
ହୃଦତଳେ କେବେ ସତେ କର ଅନୁଭବ
ପ୍ରଜାପତିସମ ମଧୁ ସ୍ପନ୍ଦନ ବିଭବ ?
କି ହେବ ଥାଇ ସେ ବୁଦ୍ଧି ବିବେକ ବିସ୍ତର,
ପ୍ରାଣ ଯେବେ ନ ଲଭିଛି ଚେତନା ସଞ୍ଚାର ।
ବୁଦ୍ଧିମାନ ତୁମେ ଜାଣ, ପିଶାଚ ଶୃଙ୍ଖଳେ
ପରାଧୀନ ବଶୀଭୂତ ଅତୃପ୍ତ ବାଞ୍ଛାରେ ।

ଉଇମନ୍ୟ ମହାଦୁଃଖୀ ନିତ୍ୟ ଅତ୍ୟାଗ୍ରସ୍ତ,
ମାନବ କ୍ଷୁଦ୍ର ପ୍ରଜାପତି ଶାନ୍ତି ଅଧିକାରୀ—

× × × ×

ପ୍ରଜାପତି, ତୁ ଅନ୍ତ କି ତୋପର ସ୍ୱାଧୀନ,
ଲଭି ତବ ପ୍ରାଣ ସ୍ୱଚ୍ଛ ସନ୍ତୋଷ ଅଭିନ୍ନ,
ଗାଇ ବାରେ ତବ ଗୀତ ଏ ମର ଜୀବନ;
ମହାସୁଖ ଅନ୍ୱେଷୀ କରନ୍ତା ସେବନ ।
ଭର ମୋତେ ଶାନ୍ତ ଅଙ୍କ, କର ହେ ରୁଚିର,
ମୋ ସମ୍ମୁଖୁ ଉଠିଯାଉ ସ୍ୱାର୍ଥର ପ୍ରାଚୀର,
ତୁଟୁ ଯେତେ ନିର୍ଯ୍ୟାତନା ଦାସତ୍ୱ ବନ୍ଧନ,
ହୋମାନଳେ ଯାଉ ଜଳି ମମତା ଇନ୍ଧନ ।
ଅଭିଳାଷ ମମ ହେବି ପ୍ରଜାପତି ସମ,
ହେବ ବିଶ୍ୱ ଶାନ୍ତିପୂର୍ଣ୍ଣ ମଞ୍ଜୁ ମନୋରମ ।
ପ୍ରଜାପତି, ପ୍ରଜାପତି, ହେ ସୁଧାସନ୍ତାନ,
ଦଗ୍‌ଧ ସୃଷ୍ଟି କୁଞ୍ଜେ ଏବେ ଉଠାଅ ହେ ତାନ,
ଜଗତର କାରାଗାରେ ଅଶାନ୍ତ ମାନବ,
ମାଗେ ତବ ଶାନ୍ତି ଭିକ୍ଷା ଉଦାର ସୌରଭ,
ଶିରେ ମମ ଜାଗୁ ନିତ୍ୟ ଅବ୍ୟକ୍ତ ସ୍ପନ୍ଦନ,
ହେ ପତଙ୍ଗ କର ମୋତେ ମଞ୍ଜୁଳ ମୋହନ ।

# ଗୋପ-ଗୌରବ

ସତ୍ୟବାଦୀର ଛୁଆଁଅନା ବନ—
ବାଣୀମନ୍ଦିର ପୁରେ,
ଦୀର୍ଘ ଗ୍ରୀଷ୍ମ ଅବକାଶ ପରେ
ନୂତନ ପ୍ରେରଣାଭରେ,
ଫେରିଲେ କିଶୋର ଦଳ,
ଅବକାଶ ପରେ ବାଣୀମନ୍ଦିରେ
ଉଠୁଥାଏ କଳରୋଳ ।

ଦୀର୍ଘ ଗ୍ରୀଷ୍ମ ଅବକାଶ ଇତି-
ମଧ୍ୟେ ଯାଇଛି ବିତି,
ନବ ମଉସୁମୀ, ଋତୁରଥରେ
ଚଞ୍ଚଳ ତେଜ ଗତି,
ଚୂତର ବକୁଳ-ରାଶି
ସୁଦୂର ମଳୟେ ଛୁଆଁଅନା ବନୁ
ସୁଦୂରେ ଯାଉଛି ଭାସି ।

ବାଣୀମନ୍ଦିରେ ଦେଖା ଦେଉଅଛି
ନୂତନ ଜୀବନଧାରା
କିଶୋର ଛାତ୍ର ଫେରି ଆସିଛନ୍ତି
ଗୁରୁକୁଳେ ଏବେ ସର୍ବ,
ସର୍ବ ଶିକ୍ଷକମେଳେ
ଗୋପବନ୍ଧୁ ତ ଥିଲେ ସେ ଛାତ୍ର-
ନିବାସେ ମମତାବଳେ ।

ଅବକାଶ ସମୟେ  କିଶୋର ଯୁବ
ଗୋଟି ଗୋଟି ହୋଇ ଥରେ
ପ୍ରଣତ ହେଲେ ସେ  ଗୋପବନ୍ଧୁଙ୍କ
ପୁଣ୍ୟ ଚରଣ ତଳେ;
ମଙ୍ଗଳାଶିଷ ଦେଇ
ଗୋପବନ୍ଧୁ ତ  ପଚାରୁ ଥାଆନ୍ତି
"କୁଶଳ ଅଛ କି ନାହିଁ ?"
ପ୍ରଥମ କହିଲା,  "ଘରେ ମା'ଙ୍କର
ଦେହ ଭଲ ନାହିଁ ମୋର"
ଦ୍ୱିତୀୟ କହିଲା,  "ଆମ ପରିବାରେ
ସଭିଙ୍କି ଭୀଷଣ ଜର"
ତୃତୀୟ କହିଲା ଧୀରେ--
"ମାଉସୀ ମୋହର  ମରିଗଲେ ସଦ୍ୟ
ଗତ ମଙ୍ଗଳବାରେ ।"
କିଏ ସେ କହିଲା  ପରିବାର ଦୁଃଖ
ନିଜ ଜୀବନର ଗାଥା,
କିଏ ସେ କହିଲା  ନିଜ ଜୀବନର
ନିଷ୍ଠୁର ବାସ୍ତବତା,
ଅର୍ଥ ଅଭାବ ତା'ର,

ସକଳ ଉତ୍ତରେ  ଥିଲା ସେହି ଏକ
ପ୍ରଶ୍ନର ବ୍ୟବହାର ।
ଶୁଣି ଶୁଣି ଏତେ  ଦୁଃଖ-ବେଦନା
ପରିବାର-ଇତିହାସ,
ଶୁଣି ଶୁଣି ଏତେ  କିଶୋର ଯୁବ
ପରାଣର ଅଭିଳାଷ,

ଥରଗଲା ତାଙ୍କ ପ୍ରାଣ,
ଅଶ୍ରୁ ଭରିଲା କ୍ଷଣେ ଗୁରୁଦେବ-
ଦୀପ୍ତ ନୟନ-କୋଣ ।
ସେ ଲୁହ ମରମ କେତେଣାର ଗୁହ
କିପରି ବୁଝିବ ଅବା !
ନିର୍ବେଦ ସମ ଗୁହାବାସେ ସେ
କିଶୋର-କୁମାର-ସଭା
ଲୁଚିଅଛି ବନବାସୀ
ସନ୍ନ୍ୟାସୀ ପ୍ରାଣ ଋଷି ଅବତାର
କହିଥିଲେ ପୁଣି ହସି—
"ତୁମେ ତ ସକଳ ଗୁହ କହିଲ
ନିଜ ଘର ସୁଖ ଦୁଃଖ,
ନିଜ ଘର ପାଇଁ ଅଶ୍ରୁ ଭରଇ
ତୁମର ସରଳ ମୁଖ;
କେହି ତ କହିଲ ନାହିଁ,
ଅବକାଶେ କଏ କାଅଣ କରୁଛ
ପଲ୍ଲୀମଙ୍ଗଳ ପାଇଁ !
କେହି ତ କହିଲ ନାହିଁ ପଢ଼ିବା ବେଳେ
ଦରିଦ୍ର ପଡ଼ୋଶୀ କଥା
ତୁମ ଗାଁଅ ବନ, ମଳିଆ, ଝାଡ଼ୁଆ,
ଚାଷୀ ପଧାନର ବ୍ୟଥା;
କେହି ତ କହିଲ ନାହିଁ—
କି କରିବେ ଚାଷୀ ବନ୍ୟା ଆଗମେ
ଭାଙ୍ଗି ଯିବ ଯେବେ ଘାଇ ।

ତୁମର ଗାଆଁର ମଣ୍ଡଳ ପଧାନ
ନୁହେଁ କିବା ତୁମ ଭାଇ,
ତୁମର ନାହିଁ କି ଦାୟିତ୍ୱ ଟିକିଏ
ତୁମ ଗାଁ ଭାଇ ପାଇଁ,
ତୁମେ କି ସ୍ୱାର୍ଥପର,
ସତ୍ୟବାଦୀର ଶିକ୍ଷା କି ତୁମ
ନାହିଁ ହେଉ ଜୀବନତଳ ।”
ବିଦ୍ୟୁତ ସମ ଚମକ ପଶିଲା
କିଶୋର-ହୃଦୟ-ତଳେ
ଛାତ୍ରାବାସର ଅନ୍ତେବାସୀଏ
ବୁଡ଼ିଲେ ଲଜ୍ଜା-ଜଳେ,
ସତ୍ୟବାଦୀର ବନେ
ଗୁରୁଦେବ ବାଣୀ ଥରାଇ ଦେଲା ସେ
ବକୁଳ-ସିଂହାସନେ ।

---

## ସେତେବେଳେ ପଡ଼ିବ କି ମନେ

ବହୁ ବହୁ ସେତେବେଳେ ପଡ଼ିବ କି ମନେ
ଗୁରୁ ବୃତ ମୁକୁଳିତ ନେଞ୍ଜେୟ ଦୁକୂଳ
ବହୁ ବହୁ ସେତେବେଳେ ପଡ଼ିବ କି ମନେ
ଧାନ କ୍ଷେତ ପଲ୍ଲୀ ଲକ୍ଷ୍ମୀ ସବୁଜ ଦୁକୂଳ
ବହୁ ବହୁ ସେତେବେଳେ ପଡ଼ିବ କି ମନେ
ଏହି ଶାନ୍ତ ଏହି କ୍ଲାନ୍ତ ରୁଦ୍ର ନୀଳାମ୍ବର
ନୀଳକାନ୍ତ ମହୋଦଧି ସ୍ନିଗ୍ଧ ବେଳାବନେ
ନୃତ୍ୟରତ କୃଷ୍ଣସାର ଗତି ଆଡ଼ମ୍ବର ।

ବହୁ କଥା ସେତେବେଳେ ପଡ଼ିବ କି ମନେ
ଏହି ଗାଆଁ ଏହି ମାଟି ଏହି ନଦୀତୀର
ବଦାୟୂର ଶେଷ ବଂଶୀ ଯେବେ ଶେଷ କ୍ଷଣେ
ବାଜିବ ଗୋ, ସ୍ମରିବ କି ଏ ଧରା ରୁଚିର ।
ବହୁ କଥା ସେତେବେଳେ ପଡ଼ିବ କି ମନେ
ମାନବ ଜୀବନ ସ୍ମୃତି, ଅନ୍ତିମ ଲଗନେ ।

+ + + +

ବହୁ କଥା ସେତେବେଳେ ପଡ଼ିବ କି ମନେ
ସରୋବର ଜଳଘାଟ, ବାଟ, ପଠାବନ
ପଲ୍ଲୀର ପ୍ରାନ୍ତର, ଶେଷ ବଦାୟୂର କ୍ଷଣେ
ଗ୍ରାମର ଗୋଧନ ଚରା ଭୂମି ଅଯତନ ।
ବହୁ କଥା ସେତେବେଳେ ପଡ଼ିବ କି ମନେ
ପଲ୍ଲୀ ଭୂଠ କୋକନଦ ଅଠା ମଲଭରିଁ
ପଦ୍ମାନ୍ତ୍ରାଦ ମଲ୍ଲୀଗନ୍ଧା, କରୁଣ ଲଗନେ
ଚକ୍ରବାକ କାନ୍ଦେ ଯେବେ ଡୁହାଇ ଡୁହାଇ ।
ବହୁ କଥା ସେତେବେଳେ ପଡ଼ିବ କି ମନେ
ଗ୍ରାମଶେଷେ ଆମ୍ରତୋଠା, କଲବେଣୁ ସ୍ୱର
ଏ ମର୍ତ୍ତ୍ୟ ଜୀବନ ମଧୁ ଅନ୍ତିମ ଲଗନେ
ସଖା ସ୍ନେହ ସମ୍ଭାଷଣ, ବନ୍ଧୁ ସହୋଦର ।
ବହୁ କଥା ସେତେବେଳେ ପଡ଼ିବ କି ମନେ
ବଦାୟୂର ବଂଶୀ ଯେବେ ବାଜିବ ଗୋ ଧନେ ।

---

# ସେବାଗ୍ରାମ ଓ ଶାନ୍ତିନିକେତନ

ଦୁଇଟି ପ୍ରଧାନ କ୍ଷେତ୍ର, ଖ୍ୟାତ ଭାରତରେ
ଗୋଟିଏ ସେବାର ଗ୍ରାମ, ସେବା ସମ୍ଭାରରେ
ଅନ୍ୟଟି ମାନବ ପ୍ରାଣ ଶର ନିଦର୍ଶନ
ଯଥାର୍ଥରେ ଶାନ୍ତିମୟ ଶାନ୍ତି ନିକେତନ ।

ଏକ ପୀଠେ ଜୀବନର ଅନାବିଲ ତ୍ୟାଗ
କ୍ଷଣସ୍ଥାୟୀ ଜୀବନର ପୁଣ୍ୟ ଅନୁରାଗ
ସାଧନା ସଂଯମ ଯୋଗ ତପସ୍ୟାର ଗାନ
ପୀଡ଼ିତ ଦରିଦ୍ର ସେବା ପରମ ବିଧାନ ।

ଅନ୍ୟ କ୍ଷେତ୍ରେ ସବୁ ଅସରନ୍ତି ଉପଭୋଗ
କାବ୍ୟପଦ୍ମ ଜୀବନର ସରସ ସଂଯୋଗ
ସୌନ୍ଦର୍ଯ୍ୟର ଉପାସନା ସୌନ୍ଦର୍ଯ୍ୟର ଗାନ
ରୂପରସ ଗନ୍ଧଭରା ପ୍ରକୃତି ବ୍ୟାଖ୍ୟାନ ।

ଏକ ପୀଠେ ଜୀବନର ଶିକ୍ଷା ବିତରଣ
ନିତ୍ୟ ନବ ଆଦର୍ଶର ଅକ୍ଳାନ୍ତ ସନ୍ଧାନ
ସତ୍ୟ ପ୍ରୀତି ମୁକ୍ତି ପାଇଁ ଜୀବନର ଡାକ
ତ୍ୟାଗେ ଯେହ୍ନେ ହୋଇଥାଏ ପ୍ରାଣ ଅଭିଷେକ ।

ଅନ୍ୟ ପୀଠେ ଯୁଗେ ଯୁଗେ ବାଣୀ ଆରାଧନା
ରସମୟୀ କବିତାର ତୁଙ୍ଗ ଉଦ୍ଦୀପନା
ସହକାର କୁଞ୍ଜେ ପିକ ଲଳିତ କାକଳୀ
ନିର୍ଝରଣୀ କଳ କଳ ସୁଷମା ଆବଳୀ ।

ଗୋଟିଏ କୁଟୀର ତାହିଁ ଗୋଟିଏ ନିକୁଞ୍ଜ
ଗୋଟିଏ ସୁରଭି ଧାର ଅନ୍ୟଟି ତ କଞ୍ଜ
ଗୋଟିଏ ମଙ୍ଗଳ ଦୀପ ଆଲୋକ ଇଙ୍ଗିତ
ଗୋଟିଏ ଚନ୍ଦ୍ରମା ଶୁଭ୍ର ବିକାଶ ଲଳିତ ।

ପ୍ରଭାତି ତଟେ ଏକ ନିଖିଳ ଜୀବନ
ବିମୁଗ୍ଧ କରଇ ଆଜ ହୃଦୟ ଚେତନ ।

---

# ତୁଠ ପଥର

ପ୍ରଥମେ ଥିଲା ସେ କାହିଁ କେଉଁ ଦୂର ପାହାଡ଼ କୂଳେ
ତା'ପରେ ତଟିନୀ ଭସାଇ ଆଣିଲା ତଟିନୀ କୂଳେ
ପ୍ରଥମେ ଥିଲା ସେ ମୂକ ପ୍ରାଣହୀନ ପାଷାଣ ବେଶେ
ଶୋଇ ରହି ଶତ ଅତୀତ ନୀରବ ପାହାଡ଼ ଦେଶେ ।

ଲୋକଲୋଚନର ଦୃଷ୍ଟି ଅଗୋଚର ଅପରିଚିତ
ତା ପାଇଁ କାହାର ହୃଦୟେ ନ ଥିଲା ସ୍ନେହ କମ୍ପିତ
ଅଜଣା ଅଶୁଣା ଥିଲା ସେ ପାଷାଣ, କଠିନ ଶିଳା
ନିଦାଘେ ତା ଦେହ ଜଳଇ ପାହାଡ଼ ଅନଳ ତୁଲା ।

ବୈଶାଖ ଖରା, ଆଷାଢ଼ ଜଳଦ, ଶରତ ସୁଧା
ଅଦ୍ୟ ମାର୍ଗଶିର ଶୀତର ପ୍ରତାପ, ଫଗୁଣ ଶ୍ରଦ୍ଧା
ସବୁ ସହି ସହି ପଡ଼ିଥିଲା ସେହି ପାହାଡ଼ କୂଳେ
ତା'ପରେ ତଟିନୀ ଭସାଇ ଆଣିଲା ମୃତ୍ତିକା ତଳେ ।

ପଲ୍ଲୀବାସୀ କିଏ ଦେଖି ତାହାରେ ଦିନେ ତଟିନୀତୀରେ
ବହି ନେଲା କାହିଁ ମମତା ଆଦରେ ଶକଟ ପରେ

ସନ୍ଧ୍ୟାଗତା କୁଳ ଗ୍ରାମ ସଂଗ୍ରତେର ଘାଟେ ଯତନେ
ପାହାଡ଼ ପାଷାଣ ମାନବ ପରଶ ପାଏ ସଘନେ

ପାହାଡ଼ ପାଷାଣ ଥିଲା ନାହିଁ ଯା'ର ଅବଶ୍ୟକତା
ପାହାଡ଼ ପଷାଣ, କେହି କହେ ନାହିଁ ଯହାର କଥା
ସେହି ଶିଳା ସେହି ଅଦ୍ଧର୍ମ ଅତୀତ ଘଟଣାକ୍ରମେ
ଗ୍ରାମ ଜଳଘାଟେ ପଡ଼ିରହି ଆଜି ଗୃହିଲ ଟେବ୍ୟାଟେମ ।

ମଥାପରେ ଭାର ବକ୍ଷପରେ ଭାର ଗ୍ରାମ କୃଷକ
ନିଦାଘ-ପିପାସା ଆକୁଳ ପ୍ରବାସୀ ହୁଏ ପଥିକ
ନୀଳ ଅନ୍ତରୀକ୍ଷ ବିହଙ୍ଗମେ ବସି କାଳେବି ପ୍ରାଙ୍ଗଣ
ହରନ୍ତି ପିପାସା, ଧରଣୀଗରମ ହରଷ ମନେ ।

ଜଳଘାଟୁ ଜଳ କି ଆମୋଦେ ସବେ କରନ୍ତି ପାନ
କିଏ ଥୋଇ ପଦ ସେହି ଶିଳାଖି-ର କରଇ ସ୍ନାନ ।
ଭାର ଦକ୍ଷପରେ କେତେ କେବ ଯା'ନ୍ତି ଚରଣ ଧୋଇ
ତୁଠ ପଥର ସେ ତୁଠ ଶିଳାକରେ ଅଛନ୍ତି ଶୋଇ
ଜଗତେ ସେ କିବା ନୀରବ ଆହ୍ୱାନେ ନରର କହେ
"ସେହୁ ପାଏ ପୂଜା ମୋ ସମାନ ଯେହୁ ବେଦନା ସହେ ।"

---

## ଖୁଦୀରାମ

ଜୟ ଖୁଦୀରାମ ଜୟ
ନ ଥିଲା କି ତୁମ ଜୀବନ ପାଇଁ କି ମୋହ
ନ ଥିଲା କି ତୁମ ଜୀବନ ମମତା ଟିକେ
ହାରପର ଠିଆ ହେଲ, ଫାସି କାଠ ତଳେ ।

କୋମଳ ବୟସେ କୋମଳ ଜୀବନେ ତବ
ଭରି ରହିଥିଲା ଭବିଷ୍ୟତ ବଇଭବ
ହସି ହସି ତୁମ ଦିନ ଯାଉଥିଲା ବିତି
ସଙ୍ଗ ସାଥୀମାନେ ଗାଇ ଜୀବନର ଗୀତି
ଜାଣି ତ ନ ଥିଲ ଦୁଃଖଦାହ ଦୁନିଆର
ସକଳ ତୁମର ବୟସ ମଧୁର ସାର
ଝରଣା ଯେସନ ବହିଯାଏ ଝରି ଝରି
ତୁମେ ସେହିପରି ଆନନ୍ଦରେ ମନ ଭରି
ଖେଳ ବୁଲୁଥିଲ ସଙ୍ଗ ସାଥୀ ମଧୁମେଳେ
ଦୂର ପୁରପଲ୍ଲୀ ବନତରୁ ଲତାମାଳେ ।

× × × ×

ଭାରତ ଜନନୀ ଅପମାନ ଅସ୍ନାନେ
ତରୁଣର ମନେ ଦେଖିଲ ଜାଗରଣ ଦିନେ
ଦେଶ ପ୍ରେମଧାରା, ସ୍ୱଦେଶ ସ୍ୱରାଜ୍ୟ ଭାବ
ଶିର ଅମଳିନ ସ୍ୱାଧୀନତା ଗଉରବ
ଥରି ଉଠିଥିଲା ନବୀନ ତରୁଣ ପ୍ରାଣ
ନାଚି ଉଠିଥିଲା ପୁଲକେ ଧମନୀ ପୁଣ
ହସି ହସି ଦେହୁ କରତାଳି ଦେଇ ସରି
ଦେଶ ଦଶ ହିତେ ବରି ନେଇଥିଲ କାରା ।
ବିପ୍ଳବ ସପନେ ବିଦ୍ରୋହ ସପନେ ମଜ୍ଜି
ତରୁଣ ବାଳକ କେଶରୀ ସମାନ ଗର୍ଜି
ଗିରଫ ଦମନ କୋରଡ଼ା ନ ମାନି ଡରେ,
ସତ୍ୟର ବଜ୍ରସ୍ୱେ, ଠିଆ ଫାସିକାଠ ତଳେ ।
ଝୁଗୋରାମ ବୀର ଭାରତ ଜନନୀ ପାଇଁ
ସ୍ୱାଧୀନତା ପଥେ ଆହୁତି ଦେଇଲ ବାହିଁ !

# କମାରଶାଳ

ପଲ୍ଲୀ ପ୍ରକୃତର          ଗଳାହାର ସମ
ଯେଉଁଠି ବହଇ ସାପୁଆ ନାଳ,
ସେଇଠି ଅଛଇ          କେତେ କାଳୁଁ ଠିଆ
ଖୋଦ ମହାରଣା କମାରଶାଳ ।
କେଉଁଦିନୁ ସେହି          ଶାଳ ଅଛି ରହି
ସେକଥା କାହାର ନାହିଁତ ଜଣା,
ପଚାରିଲେ ତେବେ          'ସାତ ପୁରୁଷର
ଏ ଶାଳ' କହନ୍ତି ସେ ମହାରଣା ।
ଧୋବ ମହାରଣା,          ଖୋବ ମହାରଣା
କେହି ପଚାରିଲେ କହନ୍ତି ପୁଣି,
ସାତ ପୁରୁଷର          ଏ ସମସ୍ତ ପର
କେତେ ଯୁଗ କଏ କହିବ ଗଣି ।
ଅପି ମହାରଣା          ପୁଅ ପରି ଖୋବ
ତାଙ୍କର ଏଇ ଯେ କମାରଶାଳ,
ଛାଇ କରି ତାର          ଶିରେ ନତ ନତ
ଆମ୍ବ କନଅର ଦୋଳାଏ ଡାଳ ।
ଯହିଁ ଠିଆ ରହି          ଡେଙ୍ଗା ଡେଙ୍ଗା ତାଳ
ତେନ୍ତୁଳି ସହିତେ ବିଛାଏ ଛାଇ
ସେଇଠି ଆମର          କମାରଶାଳରେ
ଲୋକେ ଫେରୁଥାନ୍ତି ଦାଆ ପଜାଇ ।
ଶାଳ ଘରର ତ          ଛଣ ନାହିଁ ଛୁଟେ
କେଉଁଦିନୁ ହୋଇନାହିଁ ଛପର

ପଥର ପାହାଚ  ଲଗି ପଡ଼ିଥାଇ
 ବାଲି ଗଦା ଗଦା ଚୂନ ଖପର ।
ଆଉ ଏକକୋଣେ  ପଡ଼ିଥାଏ ଖାଲି
 କଳା ମଚ ମଚ ଅଙ୍ଗାର ଗଦା,
ଲୁହା-ଛେଣି ଭିଡ଼  ଶାଣଦିଆ ଯନ୍ତ୍ର
 ମହାରଣା ଜୀବନର ସମ୍ପଦା ।
ସେହି ଶାଳ ପିଣ୍ଡା  ଆରପାଖେ ଥାଇ
 କୁଢ଼ କୁଢ଼ ନସ ଯେ ଚୂନ ପାଉଁଶ,
ତହିଁ ଆମ ଗାଆଁ  କାଳିଆ କୁକୁର
 କୁଣ୍ଡଳି ପକାଇ ଘୁମଇ ଦେହଁସ ।
ଏହି ରକମର  ଏହି ଆକାରର
 ଧୋବି କମାରର କମାରଶାଳ
ନାଆଁ ମୁହେଁ ସିଏ  ସିଏ ଧୋବି ବୁଢ଼ା
 ଦିଏ ଯଉବନ ରକତ ଢାଳ ।
ଧୋବି ମହାରଣା  ଶାଳଘର ସଖ
 ଲକ୍ଷ୍ମୀପୁରବାସୀ ଆଖଡ଼ା ଘର,
ସେଇଠି ମିଳଇ  ଗଣ୍ଡାପୁତ ପୁଅ
 ପ୍ରଧାନ ପୁଅ ଯେ ଶ୍ୟାମସୁନ୍ଦର ।
ମାଗୁଣି ନାହାକ  ବଳିଆର ସିଂହ
 ନଟିଆ ବଟଣାଇ ନଷ୍ଟଗରି କେନା,
ଶମ୍ଭୁଗୁରୁ ଘର  ପୁଅ ଲମ୍ବୋଦର
 ଗାଇ ଜଗୁଆଳ ବେହେରା ବନା ।
ସଞ୍ଜ ସକାଳେ  କୁହୁଡ଼ି ଧୂସର
 ଗାଁ ସରବରେ ଛୁଟିଲେ ଭରି,

ଖୋଜ ମହାରଣା      କମାର ଶାଳରେ
    ପଶଇ ପୁନିଆଁ ଶୀତରେ ଥଇ ।
ଭଜନ ଟୋକାର      ପୁଅ ଗୁରୁବାରୁ
    ଗୁଆକାତ ଟେକି ଦେଖାଇ କହେ,
"ହଇଏ, ମହାରଣା,      ଥରେ ଶାଣଦେଲେ
    କେତେଦିନ ଯାଏ ଦାଢ଼ ଯେ ରହେ ?
ଗଲ ମାଘ ମାସ      ଶାଣ ଦେଇଥିଲ
    ଦେଖ ଦାଢ଼ ଏବେ ଯାଇଛି ମରି
ନାଳ କାଟି ହେବ      ନାହିଁ ଟି ହେ ଏବେ
    ଏଥିରେ ମଣିଷ ଚଳେ କପରି ?
ସଦେଇ ସା'ନ୍ତଙ୍କ      କହେ ପାଟି କରି
    ହଇ ମହାରଣା ହେଲ କି କାଳ ।
ପାଞ୍ଚ ଟଙ୍କା କରି      ବିକା ହୁଏଁ ଏବେ
    ସାଉକାର ଘର ଟେକିଏ ଶାଳ ।
ଆଜ କିଏ କହେ      ଶୁଣିଥିଲ କେବେ
    ଆଠ ଅଣା କରି ପହିଁରି ମୁଗା
ଶାଗ ସେର ହୁଏ      ବାରଅଣା ସବେ
    କି ହେବ ଥାଇ ସେ ରୁପେଇ ପଠା ।
ଜନା ମହାରଣା      କମାର ପୁଅ ସେ
    ଲୁହା ପିଟି ତାର ଜୀବନ ସରେ
ଜହଳ ମରମେ      ଅନୁଭବ କରୁ
    ଲୁହା ଦର କିଏ ତୁଣ୍ଡରେ ଧରେ ?
ଭାବୁଥିଲା ଏହା      'ଯୁଦ୍ଧ ମହାମାରୀ
    କି ହେଲା ଏ କାଳ ନୁହଁଇ କହୁ

ସୁଧୀ ଗଉଡ଼ୁଣୀ           ବୁଢ଼ୀ ଏବେ ଦାଏ
    ଗୃହ ସଇସାରେ ସଢ଼ିଏ ଦୁଖ ।
କମାର ଶାଳରୁ           ନିଆଁ ଜଳି ଉଠେ
    ଜାଳି ଓରଲାଇ ସାହାଡ଼ ଲୁହା
ଧୋବ ମହାରଣା           ଲୁହା ପିଟୁ ପିଟୁ
    ଆରମ୍ଭ ହୁଅଇ କାହାଣୀ କୁହା ।
କଏ କହୁ ବସେ           ହଏ ମହାରଣା,
    ଦାଆଖଣ୍ଡେ ଏବେ ପଜାଇ ଦେଇ
ନଅ କାହିଁ ଆଠ           ଅଣା, ମଣିଷକ
    ଦୁନିଆରେ ବଞ୍ଚି ରହୁବ ନାହିଁ ।
ବାହୁନଇ କଏ           କେଉଁକାଳେ ଥିଲା
    · ଗୁଆଭାଡ଼ି ଶାଣ ଏଗାର ଅଣା
ଧୋବ କହେ ଗପି           ଜାଣିଛତ ଭାଇ
    ମୁଠାଏ ଅଙ୍ଗାର ସତର ଅଣା ।
ଦୂର ପଲ୍ଲୀ ପୁରେ           କମାର ଶାଳରେ
    ଶରଦିନ କବା ପ୍ରଦୀପ ଜଳି
ଆଲୋକ ଦଅଇ           ମଣିଷ ଜାତିରେ
    ଆମୋଦ ଆଣଇ ସରଗୁ ଟୋଳି ।
ସେ ଶାଳ ନିଆଁର           ଶିଖାରେ କି ସତେ
    ମାନବ ଜାତିର ମୁକତି ଥାଏ
ସେ ଶାଳ ନିଆଁର           ଶିଖାରେ କି ସତେ
    ଅନ୍ତର ଅନ୍ଧାର ଆଲୋକ ପାଏ ।
ପଲ୍ଲୀ ପ୍ରକୃତିର           ଗଳାହାର ସମ
    ଭଲ କଲ ବହେ ସାପୁଆ ନାଇ

କେତେ କାଳୁ ସେହୁ    ବରଗଛ ତଳେ
ଠିଆ ରହିଅଛି କମାର ଶାଳ ।
ସେହି ଶାଳଘରେ    ଜଳି ଉଠୁଛି ଯେ
ଅଗ୍ନି ମହାରଣା ଜୀବନ ଶିଖା
ସେହି ଶାଳ ଘରେ    ମହାରଣା କରେ
ଏ ଯନ୍ତ୍ର ଯୁଗର ସଙ୍ଗେ ପରୀକ୍ଷା ।
ଶାଳ ନିଆଁ ଯେହେତୁ    ଜାଳି ପୋଡ଼ିଦେଇ
ପାହାଡ଼ ଲୁହାର ପେସାଣି ଆଣେ
କଠିନ ପାଷାଣେ    ଭଗ୍ନ ଭୂଧରର
ଲୁହାରେ ଗଢ଼ଇ ନବ ବିଧାନେ ।
ଲୁହାର କଣ୍ଠ    ଫୁଟଇ ଯେସନ
ଶାଣୁନିଆଁ କ୍ଷଣେ ପରଶ ପାଇ
ତେସନ ଏ ଶାଳେ    କମାର ବୁଢ଼ାର
ଲହୁ ଲୁହେ ଘର ଦଦ୍ରୋହ ଆଇ ।
ଏହି ଧୋବ ଏହି    ନରକ ଯେତକ
ସକଳ ପୀଡ଼ିତ ନିସ୍ୱ ପ୍ରାଣ
ସବଳ ନିଃଶ୍ୱାସ    ଦେବ ଜାଳି ପୋଡ଼ି
ଦାନେ ପ୍ରବଳର ଅନ୍ୟାୟ ବାଣ ।
ଏଇ ଆମ ଗାଆଁ    କମାର ଶାଳରେ
ଧୋବ ମହାରଣା ବୁଢ଼ାର ଶ୍ରମେ
ନୂଆ ଲଭିବ    ଯୁଗେ ଯୁଗେ ପୁଞ୍ଜ
ଶ୍ରେଷ୍ଠ ଶ୍ରେଷ୍ଠ ଯେତେ ସରଳ ଗ୍ରାମେ ।
ସତେ ସେତୁ ଧୋବ    ମହାରଣା ପୁଅ-
ଗଢ଼ିଦେଲା ଆଗେ ହାତୁଡ଼ି ଦାଆ

ସେହି ମହାରଣା କମାର ଶାଳର
ପଲ୍ଲୀ-କୋଟଲ ରହୁ ଅମର ନାଁ ।

ପଉଷ ମାସର ଶୀତଳ କୁହୁଡ଼ି
ମାଘ ମାସ ଜାଡ଼ ଶୀତ ରାତରେ

ଆମ ଗାଆଁର ସେ କାଳିଆ କୁକୁର
ଶାଳ ଘରେ ଶୋଇଥାଏ ଅଙ୍ଗାରେ ।

ଦୁନିଆରେ ଯୁଗ ଯୁଗ ନୂଆ ନୂଆ
ଯନ୍ତ୍ରପାତି ଯେତେକ ହେଉ ତିଆର

ଭୁଲି କି ହୋଇବ କମାର ଶାଳର
କମାର ବୁଢ଼ାର ଲୁହା ସମ୍ଭାର ।

---

# ଅଙ୍ଗନ ତୁଳସୀ

ସରଳ ପଲ୍ଲୀର କୋଣେ, କୁଟୀର ନିର୍ଜ୍ଜନ
ନିର୍ଜ୍ଜନ କୁଟୀରେ ପୁଣି, ନିର୍ଜ୍ଜନ ଅଙ୍ଗନ
ନୀରବ ନିଭୃତ ତାହା, ନିସ୍ତବ୍ଧ ନିରତ
ଅବସ୍ଥିତି ତାର ନାହିଁ ଜାଣେ ଏ ଜଗତ ।
କେଉଁଠି ସରଳ ଗ୍ରାମ, କେଉଁଠି କୁଟୀର
କେଉଁଠି କୁଟୀରାଙ୍ଗନ, ପ୍ରାଚୀନ ପ୍ରାଚୀର
କିଏ କାହିଁ ରଖିବଟି ହିସାବ ତାହାର
ଜଟିଳ ଜଞ୍ଜାଳ ବ୍ୟସ୍ତ ମାନବ ସଂସାର
କୁଟୀର ପ୍ରାଙ୍ଗଣେ ତେବେ, ଭାହିଁ କେଉଁ ଦିନୁ
ଅଛି ସେ ତୁଳସୀ ଗଛ, ନଭ ଚନ୍ଦ୍ର ଭାନୁ
ଦେଖୁଥାନ୍ତି ନବାଙ୍ଗନ କୁଟୀର ଅଙ୍ଗନେ
ବଢ଼ଇ ତୁଳସୀ ଗଛ ପୁଲକିତ ଗହଣେ ।

ଭଗ୍ନ ପରିତ୍ୟକ୍ତ ଏସବୁ କୁଟୀର ପ୍ରାଚୀନ
ନାହିଁ ଏହି ମାନଙ୍କରେ ସତ୍ତା ନିଦର୍ଶନ
ପଦ ଦାଗ ପଡ଼ୁନାହିଁ ସେ ଜୀର୍ଣ୍ଣ ପ୍ରାଙ୍ଗଣେ
ବଢ଼ିଲ ତୁଳସୀ ଗଛ ପ୍ରକୃତି ଗହଣେ
ତପୋବନ ପୁଣ୍ୟ ଛାୟା, ଅସ୍ପଷ୍ଟ ସଙ୍କେତ
ପ୍ରକୃତିର ମୁକ୍ତଶୋଭା ତହିଁ ବିକଶିତ
ମାନବର କର ସ୍ପର୍ଶ ବାଜିନାହିଁ ତହିଁ
ପ୍ରାଙ୍ଗଣେ ତୁଳସୀ ବୃକ୍ଷ ନିତ୍ୟ ବଢ଼ୁଥାଇ ।

ସହସ୍ର ପତନୀ ପକ୍ଷ ବସି ସେ ପ୍ରାଙ୍ଗଣେ
ଉଡ଼ିଯାନ୍ତି ମାଳାଭାଙ୍ଗି ଯେବେ ସରକ୍ଷଣେ
କେବେ ଅବା ପଶି ତହିଁ ପଲ୍ଲୀର ଗୋଧନ
ସଦ୍ୟ ଅଙ୍କୁରିତ ଦୁବା କରନ୍ତି ଭକ୍ଷଣ !
ନିଷ୍ଠାପର ଉପାସକ ନ ଯାଆନ୍ତି ତହିଁ
ବିଷ୍ଣୁଭକ୍ତ, ମାଳାକାର, ଫୁଲ ବ୍ୟବସାୟୀ,
ନିର୍ଜନ ପ୍ରାଙ୍ଗଣେ ସେହୁ ପବିତ୍ର ତୁଳସୀ
ତା ପାଇଁ କେ ବହୁନାହିଁ ସଲିଳ କଳସୀ
ପ୍ରକୃତି ଗହଣେ ସେହୁ ବଢ଼େ ଅବିରତ
ପ୍ରକୃତି ସୁରମ୍ୟ କୋଳେ ସଦା ଉଲ୍ଲସିତ
ପ୍ରକୃତି ସମ୍ପଦେ ସେହୁ ବିମୁଗ୍ଧ ବିଭୋର
ନିର୍ଜନତା ଯେତେକ ତାର ବନ୍ଧନର ଡୋର
ଅନାବିଳ ଶୁଭ୍ରପୂତ ସେ ତୁଳସୀ ପତ୍ର
ସ୍ନେହ ତାରେ ଦେଇଥାନ୍ତି ଅନ୍ତରୀକ୍ଷ ଧରି
ବଢ଼ି ନାହିଁ ସେହୁ ସତ ତପସ୍ୱୀ ଆଶ୍ରମେ
କଳୁଷ ତା ଦେହେ ପାଶ ନାହିଁ ଏ ଜନମେ

ସମ୍ମାନ ସେ ପାଇନାହିଁ ବସି ଦେବ ଶିରେ
ଅଧିଷ୍ଠିତ ହୋଇନାହିଁ ପୂଜା ସମ୍ଭାରରେ
ସ୍ଥାନ ସେତୁ ନାହିଁ ପାଏ କୁସୁମ ଗହଣେ
ଦେବାଳୟ ସିଂହାସନ ମଞ୍ଜୁଳ ତୋରଣେ
ତଥାପି ପବିତ୍ର ଶୁଦ୍ଧ ଅଙ୍ଗନ ତୁଳସୀ
ତା ତନୁ ଚୁମ୍ବନ ଯେଣୁ ଦ୍ଵିପ୍ରହରା-ମସୀ
ନିସର୍ଗ ପ୍ରକୃତ କୋଳେ ବଢ଼ି ନିର୍ଜନରେ
ପ୍ରକୃତ ଅର୍ଚ୍ଚନା ପାଏ ସାଧୁ ସଜ୍ଜନରେ
ନ ଥାଉ ତାହାର ପଛେ ଗନ୍ଧ କ୍ଷଣସ୍ଥାୟୀ
ପ୍ରଶଂସା ନ ହେଉ ତାରେ କବି ରୂପପାୟୀ
ଦେହ ସୌନ୍ଦର୍ଯ୍ୟ ବିହୀନ, କିନ୍ତୁ ତା ଅନ୍ତର
ହରଷିତ ଅମଳିନ ପବିତ୍ର ସୁନ୍ଦର ।
ସୁନ୍ଦର ଜଗତ କରୁ ତା ପ୍ରତି ଆକ୍ଷେପ
ସରଳ ତୁଳସୀ କେବେ ନ କରେ ଭ୍ରୂକ୍ଷେପ ।

---

## ଚିଲିକା ପୁଳିନେ ଗୋଟିଏ ରାତ

ପ୍ରବାସର ପଥେ ଯାଉଁ ଯାଉଁ ଥରେ
ଉପଗତ ହେଲ ରଜନୀ ଉଦ୍ୟେ
ଅପରିଚିତର ସରଳ କୁଟୀରେ
ଅତିଥି ମମତା ସ୍ନେହ ଆଶ୍ରୟେ ।
ଚିଲିକା ପୁଳିନେ କୁଟୀର ତାଙ୍କର
ଚିଲିକା ଧୁଅଇ କୁଟୀର ପାଦ
ଗୋଲପୀ ଜଳର କନକ ଅମ୍ବରେ
ଲହରୀ ଶୁଣାଏ ସ୍ୱର ଶବଦ ।

ଆଜି ଏ ଯେ ମୁହିଁ ବିଶ୍ରାମେ ରହିଲି
ଲହରୀ ଚପଳ ଭୂମି ଉଢାନେ
ସମ୍ମୁଖେ ମଞ୍ଜୁଳ ମାଳମା ଲତିକା
ନୀଳ ଜଳ ନାଚେ ସମୀର ତାନେ ।
ସଞ୍ଜ ହେମମଣ୍ଡଳ ଜଳଧାରେ ମିଶି
ଲଭି ଲଭି ଶେଷେ ବନ୍ଧନ କାହିଁ
ମୁଁ ଆଜି ଉଦାସେ ଅନ୍ତରୀକ୍ଷ ତଳେ
ଲତିକା ଦର୍ପଣେ ରହିଲି ଚାହିଁ ।
ପରଦା ସଦୃଶ ସ୍ତିଭର ତିମିର
ବିଛାଇ ଦଅଇ ଧାତାର ହାତ
ବିପୁଳ ଲତିକା ହ୍ରଦ ଚଉଦିଗ
ଜଣାଯାଏ ଆଜି ନୀରବ ଶାନ୍ତ ।
କି ଉଦାର ଛବି ମଧୁର ନିମିଷ
କି ହୃଦାର ଆଶା ପିପାସା ପୂର୍ଣ
ଏ ସ୍ଥାନେ ଯେସନ ଜାଗରିତ ହୁଏ
ନିଭୃତ ଅନ୍ତର ସାତ୍ତ୍ୱିକ ଗୁଣ ।
ଏ ହ୍ରଦ ସିକତା ଅନନ୍ତ ପ୍ରସାରେ
ଆଖି ଫେରି ପଥ ପଥିକ ଭାବେ
ଏ ସରସ ସୃଷ୍ଟି ରୂପ ରଙ୍ଗମଞ୍ଚେ
ଦୈନ୍ୟ ଦୁଃଖ କାହୁଁ ଆସଇ ଉଭେ
ଅର୍ଥ ଆଡ଼ମ୍ବର ପ୍ରୟାସୀ ଜଗତ
ଜଞ୍ଜାଳ ଅଧୀର ବୁଝିବ କାହୁଁ
ଏ ହ୍ରଦ ଲହରେ ମୃଦୁଳ ସ୍ପନ୍ଦରେ
ଯେଉଁ ତୃପ୍ତି ମିଳେ ଧରଣୀ ବାହୁଁ ।

ହେ ଅନନ୍ତ ନୀଳ    ପ୍ରଶାନ୍ତ ଧବଳ
ଚିଲିକା ସୁନୀଳ ତରଙ୍ଗବେଣୀ
ଆଜି ଏ ଅପାର    ଚନ୍ଦ୍ରିକା ହିଲ୍ଲୋଳେ
ତୁମେ ତପୋରତା କି ସନ୍ନ୍ୟାସିନୀ ?
ଭିନ୍ନ ଭିନ୍ନ ରୂପେ    ପ୍ରତିଭାତ ହୁଅ
ବ୍ୟଥିତ ଏ ମତ ଜୀବନ ଆଗେ
ତୁମ ଦରଶନେ    ସଂସାରର ମନେ
କବି ଚିତ୍ତେ ଏକ ଭାବନା ଜାଗେ ।
ଇଚ୍ଛାହୁଏ ମୁହିଁ    ବ୍ୟଥିତ ପ୍ରାଣର
କେବଳ ଯୁଗଳ ଲୋତକ କଣା
ମିଶାଇ ତୋ ଜଳ    ଲବଣ୍ୟ ସମ୍ପଦେ
ବଢାନ୍ତୁ ନିରତ ବେଦନା ବୀଣା ।
ନୁହେଁ କି ପ୍ରମାଣ    ବଧିର ଭୁଅଣ
ମାନବ ଜୀବନ ସୌନ୍ଦର୍ଯ୍ୟସହ
ମିଶିବାକୁ ଚୂହେଁ    ଗୀତ ତାର ଗାଏ,
ସତ୍ୟଶିବ ପାଇଁ ଅଗାଧ ସ୍ନେହ ।
ଆଜି ଏ ତିମିର    ରଜନୀ ଗମ୍ଭୀର
କଳ ବେଣୁ ସ୍ୱରେ ଚିଲିକା କୂଳେ
ଦୂର ବ୍ୟୋମପଥେ    କା' ଇଙ୍ଗିତେ ସତେ,
କୋଟି କୋଟି ତାରା ପ୍ରଦୀପ ଜଳେ ।
ଚତୁର୍ଦ୍ଦିଗେ ସର୍ବ    ନୀରବତା ଶୋଭେ
ଅସୀମତା ମଧ୍ୟେ ଚିଲିକା ଲୀଳା
ଚିଲିକା ଗୌରବେ    ହସେ ବସୁମତୀ
ବିପିନ ପ୍ରାନ୍ତର ପାହାଡ଼ ଶିଳା

ମୁଁ ଗ୍ରହ ସରଣୀ ବଟି ଏ କୁଟୀରେ
ଗୃହୁଁ ଏକ ଚତ୍ତେ ଚଲକାଗତରେ
ସୌନ୍ଦର୍ଯ୍ୟର ସ୍ତନ୍ଧ, ପ୍ରଣତ ଜଣାଏ
କତ୍ତ୍ଵପଦେ, ଦ୍ରବେ ହୃଦସ୍ତ ବାରେ ।
ଚଲ୍‌କା ଯେସନ ସୁଷମା, ସୁନ୍ଦର
ତେସନ ମଣିଷ ଜୀବନ ଥରେ
ନ ହେବ କାହିଁକ ସୁନ୍ଦର ସରଲ
ଚା ମନୋରମ ଧରଣୀ ତଲେ ।

---

# ଶେଷ ଭିକ୍ଷା

ବିଶାଲ ଧରଣୀ ହେଉ ଉଜ୍ଜ୍ୱଳ ସୁନ୍ଦର
ଅନନ୍ତ ଅମ୍ବରେ ଶୋଭୁ ସ୍ରଷ୍ଟାର ମନ୍ଦର
ବସୁଧା ସମୃଦ୍ଧି ଘଟୁ ଯୁଗ ଯୁଗାନ୍ତରେ
ସୃଷ୍ଟି ସୁଖୀ ହେଉ ପ୍ରଭୁ ତବ ବିଧାନରେ
ଉଜ୍ଜ୍ୱଳ ହେଉ ମୋ ଦେଶ, ମାତୃଭୂମି ମୋର
କୁଟୀରେ କୁଟୀରେ ଐକ୍ୟ ବନ୍ଧନର ଡୋର
ସଂଖ୍ୟାହୀନ ଗ୍ରହ ଉପଗ୍ରହ ଧରଣୀରେ
ମଣିଷ ଶାଶ୍ୱତ ହେଉ ଅମ୍ବ-ବିକାଶରେ
ନର ନାରୀ ସୁଖେ ପ୍ରଭୁ ରହନ୍ତୁ ନିରତ
ସତ୍ୟର ବିଜୟ ହେଉ, ବିନଷ୍ଟ ଅସତ୍ୟ
ହେ ପ୍ରଭୁ ତୁମର ପଦେ ବିଶ୍ୱବାସୀ ପାଇଁ
ଏତକ ପ୍ରାର୍ଥନା କର ନତ ଡାକୁଥାଇ ।

---

ସମାପ୍ତ

---

ମୁଦ୍ରାକର—